# ତୀର୍ଥ ଦୂର୍ବାଦଳ

ଡା. ସୌଦାମିନୀ ନନ୍ଦ



ଓଡ଼ିଶା ବୁକ୍ ଷ୍ଟୋର

ତୀର୍ଥ ଦୂର୍ବାଦଳ
(ରମ୍ୟରଚନା)

ଲେଖିକା :
ଡା. ସୌଦାମିନୀ ନନ୍ଦ
ବଜ୍ରକବାଟି, କଟକ-୧

ପ୍ରକାଶକ :
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୨

ପ୍ରଥମ ପ୍ରକାଶ : ଡିସେମ୍ବର, ୧୯୯୩

ମୁଦ୍ରଣ :
ପ୍ରଶାନ୍ତ ପ୍ରିଣ୍ଟେକସ
କଟକ-୮

ମୂଲ୍ୟ : ପଚିଶ ଟଙ୍କା
(ସାଧାରଣ କୋଡ଼ିଏ ଟଙ୍କା)

TIRTHA DURBADAL
(Creative Essays)

By
**Dr. Soudamini Nanda**
Bajrakabati, Cuttack

**Sri Govinda Charan Patra**
Orissa Book Store
Binodbehari, Cuttack-2

First Edition—1993

Printed at :
**Prasanti Printex**
Cuttack-8

**Price : Rs. 25-/**

# ଅଭିମତ

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗଦ୍ୟ-ସାହିତ୍ୟର ଭୂୟୋ ବିକାଶକୁ ପର୍ଯ୍ୟାଲୋଚନା କଲେ ଗୋଟିଏ କଥା ଆମ ଧାରଣାରେ ସ୍ପଷ୍ଟ ଓ ଦୃଢ଼ ହୋଇଯାଏ ଯେ, ଆମର ଏଇ ମାତୃଭାଷା ଯେ କୌଣସି ଉନ୍ନତ, ଜଟିଳ ଓ ଗମ୍ଭୀର ଚିନ୍ତା, ଭାବନା ଓ ଅନୁଭୂତିକୁ ସାବଲୀଳ ଓ ଯଥାର୍ଥ ଭାବେ ପ୍ରକାଶ କରିବା ପାଇଁ ବର୍ତ୍ତମାନ ଯଥେଷ୍ଟ ସମର୍ଥ ହୋଇ ଉଠିଲଣି । ଆମ ଗଦ୍ୟ-ସାହିତ୍ୟ ବିଭାଗର ଗଳ୍ପ, ଉପନ୍ୟାସ, ନାଟକାଦି ନିଶ୍ଚୟ ଆମର ଏହି ଆସ୍ଥା ଓ ବିଶ୍ୱାସକୁ ପ୍ରମାଣିତ କରି ସାରିଛନ୍ତି । କିନ୍ତୁ ମୁଁ ଆମ ଗଦ୍ୟ-ସାହିତ୍ୟର ଅନ୍ୟ ବିଶିଷ୍ଟ ବିଭାଗଟିର କଥା କହିବି । ତାହା ହେଲା ଆମର ପ୍ରବନ୍ଧ, ନିବନ୍ଧ ଓ ରମ୍ୟରଚନା ବିଭାଗ । ଶତାବ୍ଦୀ ତଳେ ରାଧାନାଥଙ୍କ 'ବିବେକୀ' ବା ମଧୁସୂଦନଙ୍କ 'ଚନ୍ଦ୍ର ଓ ତାରା'ଠାରୁ ଆମର ଏଇ ପ୍ରବନ୍ଧ ସାହିତ୍ୟର ଅଯୁମାରମ୍ଭ ହେଲା । ମାତ୍ର ଏଇ ଶତାବ୍ଦୀ ଭିତରେ ଆମର ଏଇ ପ୍ରବନ୍ଧ ଓ ରମ୍ୟରଚନା ବିଭାଗଟିର ସମୃଦ୍ଧି ଦେଖିଲେ ପ୍ରକୃତରେ ବିସ୍ମୟାଭିଭୂତ ନ ହୋଇ ରହିହୁଏ ନାହିଁ । ଗୋପାଳ ପ୍ରହରାଜଙ୍କଠାରୁ ଗୋବିନ୍ଦ ତ୍ରିପାଠୀଙ୍କ ପର୍ଯ୍ୟନ୍ତ ଓ ଚିତ୍ତରଞ୍ଜନ ଦାସଙ୍କଠାରୁ ଶରତ ମହାନ୍ତି ଓ ଚନ୍ଦ୍ରଶେଖର ରଥଙ୍କ ପର୍ଯ୍ୟନ୍ତ ପ୍ରତିଭାଧର ଗଦ୍ୟ-ସ୍ରଷ୍ଟାଙ୍କ ହାତରେ ଆମର ସୃଜନାତ୍ମକ ପ୍ରବନ୍ଧ ସାହିତ୍ୟ ଆଜି ଏକ ମର୍ଯ୍ୟାଦାବନ୍ତ ଆସନରେ ସୁପ୍ରତିଷ୍ଠିତ ହୋଇସାରିଛି । ସାହିତ୍ୟିକ ବା ସୃଜନାତ୍ମକ ଗଦ୍ୟ ରଚନାକୁ ଆମେ 'ରମ୍ୟରଚନା' ବୋଲି ଆଖ୍ୟାତ କରିଛୁ । କହିବା ବାହୁଲ୍ୟ ଯେ ଏହି ରମ୍ୟରଚନା ବା creative essayର ଆଦର ଆଜି ବିଶ୍ୱସାହିତ୍ୟରେ ବଢ଼ି ବଢ଼ି ଚାଲିଛି ।

ଗୋଟିଏ ଜାତିର ଆବେଗ, ଅନୁଭବ, ଭାବାବେଗ, ଅଭିଜ୍ଞତା ଓ ଉପଲବ୍ଧି ସେହି ଜାତିର କବିତା ସାହିତ୍ୟ ଭିତରେ ଅଭିବ୍ୟକ୍ତି ଲାଭ କରିଥାଏ । ସେହିପରି ଗୋଟିଏ ଜାତିର ଚିନ୍ତନ, ମନନ, ଚିନ୍ତାଦର୍ଶ ବା ଭାବାଦର୍ଶ, ସତ୍ୟ ଓ ନ୍ୟାୟଦର୍ଶନ ସେଇ ଜାତିର ଗଦ୍ୟ ରଚନା, ପ୍ରବନ୍ଧ ବା ରମ୍ୟରଚନା ଭିତରେ ପ୍ରକାଶ ପାଇଥାଏ । କବିତା ଓ ପ୍ରବନ୍ଧ ବା ପଦ୍ୟ ଓ ଗଦ୍ୟ ଉଭୟ ବିଭାଗର ଉତ୍କର୍ଷ ପ୍ରମାଣିତ ହୋଇ ନ ଥିଲେ ସେ ଭାଷା-ସାହିତ୍ୟରେ ଗଳ୍ପ, କବିତା ବିଭାଗ ସହିତ ପ୍ରବନ୍ଧ ଓ ରମ୍ୟରଚନା ବିଭାଗ ମଧ୍ୟ ତଦ୍ରୂପ ସମୁନ୍ନତି ଲାଭ କରିଛି ।

ଗତ କୋଡ଼ିଏ/ପଚିଶି ବର୍ଷ ଭିତରେ ଯେଉଁ କେତେଜଣ ସୃଜନଶୀଳ ବିଦଗ୍ଧଚିତ୍ତ ପ୍ରତିଭାବାନ୍ ଲେଖକ-ଲେଖିକା ଏ ଦିଗରେ ଉଲ୍ଲେଖଯୋଗ୍ୟ କୃତିତ୍ୱ ପ୍ରଦର୍ଶନ କରିଛନ୍ତି, ସେମାନଙ୍କ ଭିତରେ ଡକ୍ଟର ସୌଦାମିନୀ ନନ୍ଦଙ୍କ ଲେଖନୀ ବେଶ୍ ଜାଜ୍ୱଲ୍ୟମାନ ହୋଇ ଦୃଶ୍ୟମାନ ହୁଏ । ସୌଦାମିନୀ ଆଜି ପର୍ଯ୍ୟନ୍ତ ପ୍ରାୟ ଅର୍ଦ୍ଧଶତ ଶ୍ରେଷ୍ଠ ବଡ଼ ରମ୍ୟରଚନା ସୃଷ୍ଟି କରିଚନ୍ତି ଏବଂ ଏଥିରେ ସନ୍ଦେହ ନାହିଁ ଯେ, ସେହି ରଚନାଗୁଡ଼ିକ ଭାଷା, ଶୈଳୀ ଓ ବିଷୟବସ୍ତୁରେ ଯେପରି ଉନ୍ନତ ଓ ବ୍ୟାପକ, ସେହିପରି ମଧ୍ୟ ଗମ୍ଭୀର ଓ ରସାପ୍ଲୁତ ।

ସୌଦାମିନୀଙ୍କର ପ୍ରଥମ ରମ୍ୟରଚନା ସଂକଳନ 'ସୂର୍ଯ୍ୟାଭିସାର' ଥିଲା ଏ କ୍ଷେତ୍ରରେ ତାଙ୍କର ଉଜ୍ଜ୍ୱଳ ପ୍ରତିଶ୍ରୁତି । ଏଥିରେ ସ୍ଥାନିତ ରୂପାମ୍ବିକା, ବିଦେହ ବିଳାସ, ସୃଜାମ୍ୟହମ୍, ଯାଦ୍ୱା ସଙ୍ଗୀତ, ତ୍ରିବେଣୀ, ମାଳନଷ୍ଟିହ୍ନ ପ୍ରଭୃତି ବିଷୟଗୁଡ଼ିକ ପାଠ କଲେ ଲେଖିକାଙ୍କର ଜୀବନ ସଂପର୍କରେ ଗମ୍ଭୀର ମନନ-ଶୀଳତା, ଜିଜ୍ଞାସାବାଦ ଓ ସ୍ନିଗ୍ଧ ଅନୁଭବଗୁଡ଼ିକ ପାଠକର ମନ ଓ ହୃଦୟରେ ଏକା ସମୟରେ ସମାନ ସଂବେଦନା ସୃଷ୍ଟି କରେ । ସୂର୍ଯ୍ୟାଭିସାର ପରେ ସେ ଆଉ ଅନେକ ରମ୍ୟରଚନା ସୃଷ୍ଟି କରିଛନ୍ତି । ସେଥିରୁ କେତେକ ସଂପୂର୍ଣ୍ଣଭାବେ ଗୁରୁତ୍ୱପୂର୍ଣ୍ଣ ଦାର୍ଶନିକ ଚିନ୍ତା ଉପରେ ଆଧାରିତ । ଯଥା—ନାଦ ଓ ଆର୍ତ୍ତନାଦ, ନିଜଗତ, ଅଜାତଶତ୍ରୁ, ମହାକାଳ ଓ ମହାଜୀବନ, ଫୁଲ ଓ ଫୁଲ୍ଲ ପ୍ରଭୃତି ଏବଂ ଆଉ କେତେକ ରଚନା ପୁରାଣର ଚରିତ୍ରମାନଙ୍କୁ ନେଇ । ଅନ୍ୟ କେତେକ ରଚନାର ବିଷୟବସ୍ତୁ ମିଶ୍ର । କିଛି ରସ, କିଛି ଚିନ୍ତା ବା ମନନ, କିଛି ତଥ୍ୟ ଏବଂ ତାରି ଭିତରେ ଜୀବନକୁ ନିବିଡ଼ ଭାବେ ବୁଝିବାର ପ୍ରୟାସ । ଏ ଦୃଷ୍ଟିରୁ ଅହଲ୍ୟାର ସିନ୍ଧି, ତୀର୍ଥ ଦୁର୍ବାଦଳ, ଆମ୍ରଦୀପ ପ୍ରଭୃତି ରମ୍ୟରଚନାଗୁଡ଼ିକ ଆମ ସାହିତ୍ୟରେ ଅନବଦ୍ୟ ଏବଂ ଏକ ଶାଶ୍ୱତ ପ୍ରତିଷ୍ଠାର ଅଧିକାର ଦାବି କରନ୍ତି । ...ଗୌତମ ପତ୍ନୀ ଅହଲ୍ୟା, ଭରତ, ସୂର୍ପଣଖା ପ୍ରଭୃତି ପୌରାଣିକ ଚରିତ୍ରଗୁଡ଼ିକୁ ସେ ଯେତେବେଳେ ବିଶ୍ଳେଷଣ କରନ୍ତି—ସେତେବେଳେ ତାହା ଏକ ବସ୍ତୁନିଷ୍ଠ ଦୃଷ୍ଟିକ୍ଷେପ ବୋଲି ଆଦୌ ମନେହୁଏ ନାହିଁ । ସତେକି ଲେଖିକା ସେହି ସେହି ଚରିତ୍ରଗୁଡ଼ିକ ସହିତ ଏକାତ୍ମ ହୋଇଯାଇଛନ୍ତି । ସତେକି ଲେଖିକା ସେହି ସେହି ଚରିତ୍ରଗୁଡ଼ିକ ଭିତରେ ପ୍ରବେଶ କରି ସେମାନଙ୍କ ମୂକମୁଖକୁ ବାଚାଳ କରି ଦେଇଛନ୍ତି କିମ୍ବା ସେମାନେ ଆସି ଲେଖିକାଙ୍କ ହୃଦୟ ଭିତରେ ଏକ ତୁମୁଳ ଝଡ଼ ସୃଷ୍ଟି କରିଛନ୍ତି । ସେହି ଚରିତ୍ରମାନେ ସତେକି ବହୁଦିନ ଧରି ମୂକ

ରହିଥିଲେ ଏବଂ ସେମାନଙ୍କ ହୃଦୟର ବେଦନା-ବାର୍ତ୍ତା କାହାକୁ ଶୁଣାଇ ପାରୁ ନ ଥିଲେ । ସୌଦାମିନୀଙ୍କ ଲେଖାମାନରେ ସେମାନେ ମୁଖର ହୋଇଉଠିଛନ୍ତି । ଫଳରେ ପ୍ରତ୍ୟେକ ସେଇ ସବୁ ଚରିତ୍ର ଆମ ଆଗରେ ଆଉଥରେ ଜୀଇଁ ଉଠିଛନ୍ତି ଏବଂ ଆମର ମର୍ମସ୍ଥଳକୁ ସେମାନଙ୍କର ଜୀବନର ଅର୍ଥ ଓ ରସରେ ସ୍ପନ୍ଦିତ ଓ ଆପ୍ଲୁତ କରି ଦେଉଛନ୍ତି ।

ସେହିପରି ତାଙ୍କର ଅନ୍ୟାନ୍ୟ ରଚନାଗୁଡ଼ିକ, ଯଥା—ତୃଷ୍ଣାପୂରସମ୍ବନ୍ଧ, ସୁନାହରିଣ, ଚ୍ୟୁତପ୍ରତିମା ପ୍ରଭୃତିରେ ଲେଖିକାଙ୍କର ସୂକ୍ଷ୍ମ ତତ୍ତ୍ୱଜ୍ଞାନର ସମୁଜ୍ଜ୍ୱଳ ଆଲେଖ୍ୟ ଆମର ଚେତନାରେ ପ୍ରତିଭାତ ହୋଇଥାଏ ।

ସୌଦାମିନୀଙ୍କ ରମ୍ୟରଚନାଗୁଡ଼ିକ ପଢ଼ିଲାବେଳେ ପାଠକର ମନ ଏକାଧାରରେ ଭାବିବାକୁ ଓ ଅନୁଭବ କରିବାକୁ ସୁଯୋଗ ପାଏ । ଭାଷା ଉପରେ ତାଙ୍କର ଦକ୍ଷତା ଦେଖି ବିସ୍ମିତ ହେବାକୁ ହୁଏ । କିନ୍ତୁ କେବଳ ଭାଷାର ଐଶ୍ୱର୍ଯ୍ୟ ପାଇଁ ନୁହେଁ—ଶୁଦ୍ଧ ଆବେଗ ସହିତ ନିରପେକ୍ଷ ବିଶ୍ଳେଷଣ-ବର୍ଗର ସମନ୍ୱୟ କରି ଏକ ଯାଦୁକରୀ ଶୈଳୀ ନିର୍ମାଣ ତାଙ୍କର ଅନନ୍ୟ ପ୍ରତିଭାର ନିଦର୍ଶନ ଦିଏ । ଗଦ୍ୟର ପରିଚ୍ଛନ୍ନତା, ସୁସ୍ପଷ୍ଟତା, ଯୁକ୍ତିଯୁକ୍ତତା, ଯଥାର୍ଥତା, ସଂକ୍ଷିପ୍ତତା ଓ ତୀକ୍ଷ୍ଣତା ସହିତ ସେ ମିଶାଇ ଦିଅନ୍ତି କବିତାର କରୁଣ ମଧୁର ଓ ବିଶଦ ଆବେଗଗୁଡ଼ିକର ଛନ୍ଦ ଓ ସ୍ପନ୍ଦନ । କୌଣସି ବିଷୟର ଅବତାରଣା କଲାବେଳେ ବାକ୍ୟଗୁଡ଼ିକ ସମୁଦ୍ର ଭିତରୁ ଢେଉପରି ମାଡ଼ି ଆସନ୍ତି । ଏଇ ଢେଉଗୁଡ଼ିକ କେତେବେଳେ ପୁଣି ଗର୍ଜନଶୀଳ ଉଚ୍ଛ୍ୱସିତ । ବେଳେ ବେଳେ ଏକୁଟିଆ ଢେଉଟିଏ କୂଳ ଆଡ଼କୁ ମାଡ଼ିଆସି ଧୀରସ୍ୱରରେ ସମୁଦ୍ରର ବାର୍ତ୍ତାଟିଏ ଶୁଣାଇ ଦେଇଥାଏ । ଆଉ କେତେବେଳକେ ଅସଂଖ୍ୟ ଢେଉ ଏକାଠି ମାଡ଼ି ଆସନ୍ତି ଏବଂ ନାନା ସ୍ୱରରେ ତୁମୁଳ ଗର୍ଜନ କରି ମହାସମୁଦ୍ରର ଗଭୀର ହୃଦୟର ବାର୍ତ୍ତା କୂଳବାସୀଙ୍କ କାନରେ ନିନାଦିତ କରି ଦେଇଯାନ୍ତି ।

ତାଙ୍କର ଦାର୍ଶନିକ ଚିନ୍ତା ଓ ଅନୁଚିନ୍ତାଗୁଡ଼ିକ ଜୀବନର ରସରେ ସିଞ୍ଚିତ ହୋଇଥିବାରୁ ପାଠକ ମନରେ ଏକ ରୋମାଣ୍ଟିକ୍ ରହସ୍ୟମୟ ଆବେଶ ସୃଷ୍ଟି କରେ । ତାଙ୍କ ରଚନାଗୁଡ଼ିକରେ ସେ କେବଳ ବିଷୟବସ୍ତୁଗୁଡ଼ିକୁ ବିଶ୍ଳେଷଣ କରିନାହାନ୍ତି । ସବୁ କିଛି ବିଶ୍ଳେଷଣ କରିସାରି ସେ ଶେଷରେ ଏକ ସଂଶ୍ଳେଷଣାତ୍ମକ ସିଦ୍ଧାନ୍ତରେ ମଧ୍ୟ ନିଜେ ପହଞ୍ଚିଯାନ୍ତି ଓ ପାଠକକୁ ମଧ୍ୟ ପହଞ୍ଚାଇ ଦିଅନ୍ତି ।

ସୌଦାମିନୀଙ୍କ ରମ୍ୟରଚନାଗୁଡ଼ିକର ଅନ୍ୟତମ ବିଶେଷ ଗୁଣ ହେଲା— କୌଣସି ଜଟିଳ ପରସ୍ପର ବିରୋଧୀ ତତ୍ତ୍ୱର ଆଲୋଚନାବେଳେ ସେ ଉଭୟ ପକ୍ଷର ଦାବୀକୁ ସ୍ୱୀକାର କରିଥାନ୍ତି । ଉଭୟପକ୍ଷ ଦାବୀର ଯଥାର୍ଥତା ମଧ୍ୟ ପ୍ରତିପାଦନ କରିଥାନ୍ତି । କିନ୍ତୁ ଶେଷରେ ସେ ଏପରି ଏକ ଅଭିନବ ସିଦ୍ଧାନ୍ତରେ ଉପନୀତ ହୁଅନ୍ତି ଯେ, ଯାହାକି ସତ୍ୟର ବା ତତ୍ତ୍ୱର ଦୁଇ ଯୁଧ୍ୟମାନ ବିରୋଧୀ ଗୋଷ୍ଠିଙ୍କ ସଂକୀର୍ଣ୍ଣ ସୀମାକୁ ଅତିକ୍ରମ କରି ଆଉ ଏକ ଊର୍ଦ୍ଧ୍ୱ ସ୍ତରର ସତ୍ୟକୁ ପ୍ରତିପାଦିତ କରିଥାଏ ଏବଂ ଏହି ସ୍ତରର ସତ୍ୟଭୂମିରେ ଦୁଇ ବିରୋଧାତ୍ମକ ଭାବ ସମ୍ମିଳିତ ହୋଇଯାନ୍ତି ଓ ସେମାନଙ୍କ ଭିତରେ ଆପାତ ବିରୋଧିତା ଦୂର ହୁଏ । ଯଦିଓ ଦୁଇପକ୍ଷର ନିଜସ୍ୱ ସତ୍ୟଗୁଡ଼ିକର କୌଣସି ଗ୍ଳାନି ହୁଏନାହିଁ । ଜୀବନକୁ ନେଇ ଗଭୀର ଧ୍ୟାନ ଓ ମନନ ନ ଥିଲେ, ଏପରି ଉଦାର ଉଜ୍ଜ୍ୱଳ ସତ୍ୟଦୃଷ୍ଟି ଲାଭ କରିବା ସମ୍ଭବ ନୁହେଁ । ତାଙ୍କର ଏହି ସତ୍ୟଦର୍ଶନ ଏକାଧାରରେ ନାନ୍ଦନିକ, ନୈତିକ ଓ ଆଧ୍ୟାତ୍ମିକ ।

ତାଙ୍କର ରମ୍ୟରଚନାଗୁଡ଼ିକର ବିଷୟବସ୍ତୁ ପ୍ରାୟତଃ ଗମ୍ଭୀର ଓ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ଅଭିବ୍ୟକ୍ତି ସବୁବେଳେ ଲଳିତ, ସୁକୁମାର ଆଉ ମାଧୁର୍ଯ୍ୟ ଗୁଣସମ୍ପନ୍ନ । 'ଶିର୍ଥ ଦୁର୍ବାଦଳ' ବା 'ଆତ୍ମଦୀପ' ଭଳି ରଚନା ପାଠ କଲାପରେ ପାଠକର ଚିତ୍ତ ଏକ ସ୍ନିଗ୍ଧ ପ୍ରସାଦ ଗୁଣରେ ମଧ୍ୟ ପରିପୂର୍ଣ୍ଣ ହୋଇଯାଏ । ତାଙ୍କର ଚିନ୍ତନ ଓ ମନନ ଉପବନରେ ପୁଣି ଅହରହ ତାଙ୍କ ନିଜ ହୃଦୟ ଗହନ ଭିତରୁ କୋକିଳ ଓ ହଳଦୀବସନ୍ତାଦି ଅସଂଖ୍ୟ ମଧୁକଣ୍ଠୀ ବିହଙ୍ଗ କୁହୁ-କୂଜନ କରୁଥାନ୍ତି । ଅସଂଖ୍ୟ ଭ୍ରମର ଆଉ ମହୁମାଛିଙ୍କ ମୃଦୁ ଗୁଞ୍ଜନରେ ମଧୁ ମୁଖରିତ ହେଉଥାଏ ତାଙ୍କର ଭାବ ଓ ଅନୁଭବର ପୁଷ୍ପବାଟିକା । ଅକୁଣ୍ଠିତ ଚିତ୍ତରେ ସ୍ୱୀକାର କରିବାକୁ ହେବ ଯେ, ସୌଦାମିନୀଙ୍କର ରମ୍ୟରଚନାଗୁଡ଼ିକ ସବୁ ଦୃଷ୍ଟିରୁ ଆମ ସାହିତ୍ୟରେ ଅନବଦ୍ୟ ଓ ଅଭିନବ ସୃଷ୍ଟି ।

ମୁଁ ଆଶାକରେ, ଏହି ପ୍ରତିଭାବିଣୀ, ବିଦଗ୍ଧହୃଦୟା ବିଦୁଷୀ ଲେଖିକାଙ୍କର ସଂକଳନଟି ନିଶ୍ଚୟ ଓଡ଼ିଶାର ସହୃଦୟ ଓ ଜୀବନଜିଜ୍ଞାସୁ ପାଠକ-ପାଠିକା-ମାନଙ୍କର ସମାଗ୍ରହ ଓ ସମାଦର ଲାଭ କରିବ । ଇତି ।

**ମହାପାତ୍ର ନୀଳମଣି ସାହୁ**
୭୮୭-ଆକାଶ ପାତାଳ
ଶହୀଦ ନଗର, ଭୁବନେଶ୍ୱର-୭

ତା ୧୦ । ୧୦ । ୧୯୯୩

# ନିଜ କଥା

ନିଜ କି ନିଜ ଜାଣେନା, ସେମାନେ କିନ୍ତୁ ଚିହ୍ନା। ଆଶ୍ରିତମାନଙ୍କ ଦୃଷ୍ଟି ଦ୍ରବ୍ୟ-ଅଦ୍ରବ୍ୟ ଶଦ୍ଦଶଯ୍ୟା, ଲେଉଡ଼ୁଛନ୍ତି ଗଦ୍ୟଛନ୍ଦର ଛଟବନ୍ଧନ। ଦୀର୍ଘକାଳର ଗୁହାସ୍ଥିତ ଅନ୍ଧାରରୁ ଆଲୋକର ପ୍ରକାଶମାର୍ଗଟିଏ ଉନ୍ମୋଚିତ କରିବାକୁ ଯାଉଛନ୍ତି ଶ୍ରୀଯୁକ୍ତ ଗୋବିନ୍ଦବାବୁ, ହୁଏତ କଷ୍ଟିଷ୍ଠ। ଦୁଃସାହସର ସହ : ଏମାନେ ଯେ ମନୋରଂଜନଧର୍ମୀ ନୁହଁନ୍ତି, ଅର୍ଥକାରୀ ହେବାର ସଂଭାବନାପୂର୍ଣ୍ଣ ନୁହଁନ୍ତି, ଏ ସବୁ ସତ୍ତ୍ୱେ, ଏକ ପୁସ୍ତକପ୍ରେମୀ, ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଅଙ୍ଗୀକାରବଦ୍ଧ ଏକ ଅନୁରାଗୀ ପ୍ରକାଶକ ରୂପେ। ତାଙ୍କ ପାଖେ ମୋର କୃତଜ୍ଞତାର ଭାଷା ନାହିଁ ।

ଲେଖାଗୁଡ଼ିକ ସଂପର୍କରେ ମୋର ସାର୍, ପୂଜ୍ୟ ଶିକ୍ଷକ ଗୁରୁ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁଙ୍କର ଆଗ୍ରହସଂଜାତ ଅଭିମତଟି ମୋ ପ୍ରତି ତାଙ୍କର ସ୍ନେହ, ଶ୍ରଦ୍ଧା ଓ ଆଶୀର୍ବାଦର ସନ୍ତକ ରୂପେ ମୁଁ କୃତାଞ୍ଜଳି ହୋଇ ଗ୍ରହଣ କରୁଛି।

ପ୍ରଚ୍ଛଦପଟ ଅଙ୍କନ କରିଥିବା ଶିଳ୍ପୀ ମୋର ସାନଭାଇ, ଖଲ୍ଲିକୋଟ କଳା ମହାବିଦ୍ୟାଳୟର କୃତୀ ଛାତ୍ର ଶ୍ରୀ ପ୍ରଭାସ ମିଶ୍ର (ବୁଟୁ) କୁ ମୋର ଆନ୍ତରିକ ସ୍ନେହ, ଶ୍ରଦ୍ଧା ଓ ଶୁଭେଚ୍ଛା ଜଣାଉଛି।

ଏ ଗ୍ରନ୍ଥକୁ ମୁଁ ମୋର ମାମୁଁ, ଶ୍ରୀ କୃଷ୍ଣଚନ୍ଦ୍ର ଶତପଥୀଙ୍କୁ ଗଭୀର ଭକ୍ତି ଓ ସମ୍ମାନ ସହକାରେ ଅର୍ପଣ କରୁଛି।

**ସୌଦାମିନୀ ନନ୍ଦ**

# ସୂଚୀ





# ପୂର୍ବାଭାସ

ସୃଷ୍ଟିର ପ୍ରଥମ କଣ୍ଠସ୍ଫୁଟ ଧ୍ୱନି 'ଓଁ' ପରେ ତ ଯାବତୀୟ ବାଙ୍ମୟ କେବଳ ବାକ୍ ବିଳାସ, ସବୁ ଅଯଥାଭାଷ; ତଥାପି କାହିଁକି ଗଗନପବନ ଭେଦି ଶବ୍ଦମାନଙ୍କର ଏ ବିପୁଳ କୋଳାହଳ ! ମୁହୂର୍ତ୍ତ ମୁହୂର୍ତ୍ତ କରି ପ୍ରାଣର ଅଜସ୍ର କୁହାଟ ଏବଂ ସବୁ ନୀରବ ନିସ୍ପନ୍ଦତାକୁ ଭେଦକରି ଆତ୍ମାର ଅଶ୍ରୁତ ସଙ୍ଗୀତ ଅନ୍ତରୀକ୍ଷରେ ସଞ୍ଚାରିତ ।

ଅସଂଖ୍ୟ ପ୍ରକାରେ ଅସୁମାରି କଥାର ଅସରନ୍ତି ଆୟୋଜନ ସତ୍ତ୍ୱେବି କାହିଁକି ଶିଶୁକଣ୍ଠର ଦରସ୍ଫୁଟ କାକଳିରେ ଜଗତର ସବୁ ମାଧୁର୍ଯ୍ୟ ଘନୀଭୂତ ହୋଇ ଉଠନ୍ତି ? ପୁଣି ପ୍ରତି ଶିଶୁ କଣ୍ଠରେ ମାତୃମମତା ଝରି 'ଆ ଜହ୍ନମାମୁଁ' ନୂଆକରି ଏକ ଆନନ୍ଦଲୋକର ସନ୍ଦେଶ ଶୁଣାଏ । କାହିଁକି ଅଜସ୍ର କଣ୍ଠର ପୁନରାବୃତ୍ତି ସତ୍ତ୍ୱେ 'ଭଲପାଏ'ର ମୋହିନୀ ମନ୍ତ୍ରଟି ପ୍ରତିଟି ହୃଦୟ ପାଇଁ ଗୋଟିଏ ଗୋଟିଏ ପ୍ରେମାକୁଳ କଣ୍ଠରେ ଦୁର୍ଲ୍ଲଭ ମଧୁର ସ୍ୱର ଝଙ୍କାର ହୋଇ ବାଜିଉଠେ !

କହିବାର ପ୍ରୟୋଜନ ଅଛି ଅଥବା ନାହିଁ ? କାହିଁକି କବି ପ୍ରାଣରେ ବେଦନା, ସୃଷ୍ଟିର ସବୁ ରୂପକୁ ସେ ବର୍ଣ୍ଣି ପାରିଲି ନାହିଁ ! ହୃଦୟର ସବୁ ଭାବକୁ ବାଢ଼ି ପାରିଲି ନାହିଁ । କୋଉ ନୂଆ କଥା ବା ସେ କହନ୍ତା ? ତଥାପି ସବୁ ରହସ୍ୟ ହୋଇ ଅବୋଧ ବିସ୍ମୟରେ ତା'ର ଲେଖନୀକୁ ସ୍ତବ୍ଧ କରି ଦିଅନ୍ତି । ଶିଳ୍ପୀ ହତାଶ ହୁଏ, କିଛି ବି ଆଙ୍କି ପାରିଲି ନାହିଁ । ମାତ୍ର କେଉଁ ନୂଆ ଛବି ବା ସେ ଆଙ୍କନ୍ତା ?

କିନ୍ତୁ କବି/ଶିଳ୍ପୀ କ'ଣ ନୂଆ କିଛି କହିବାର ଦାବୀ କରେ ? କେହି କେବେ ନୂଆ କିଛି କହିପାରେ ? ହେଲେ କହିବା ଭିତରେ ସବୁ ପୁରୁଣା ଭାଷାର କଥା ଯେ ନୂଆ ହୋଇଯାନ୍ତି । ନୂଆ-ପୁରୁଣାର ଏଇ ରହସ୍ୟକୁ ଆସ୍ୱାଦ କରିଛି ବୋଲି ତ କାଳି କଲମର, ବର୍ଣ୍ଣ ଓ ତୂଳୀର ଏ ଅବିଶ୍ରାନ୍ତ ଶିଳ୍ପ-ସାଧନା । ଜୀବନପଥରେ ସମସ୍ତଙ୍କୁ ପୁରୁଣା ଶଗଡ଼ ଗୁଳାରେ ଗଡ଼ିଯିବାକୁ ହୁଏ, ତଥାପି ଜୀଇଁବାର ବିଚିତ୍ର କୌଶଳରେ ପ୍ରତିଟି ବ୍ୟକ୍ତି ସବୁ ପୁରୁଣାକୁ ନୂଆ

କରି ଲାଭ କରେ । ସବୁ କିଛିକୁ ନୂଆକରି ଭେଟେ । ପୁରୁଣା ଜଗତକୁ ନିଜ ଆଖିରେ ପ୍ରଥମ ଥର ନୂଆ ରୂପରେ ହିଁ ଦେଖେ । ସେହି ନୂତନ ଦେଖାର ଚମକ ତାକୁ ବୋଧହୁଏ ଅଭିଭୂତ କରେ, ବିହ୍ୱଳ କରେ, ବିସ୍ମିତ ଏକ ବିଗନ୍ତ ଭିତରକୁ ପ୍ରସାରିତ କରିନିଏ । ନୂତନ ଦେଖାର ଏ ବିପୁଳାନୁଭୂତିକୁ ଆପଣାର କ୍ଷୁଦ୍ର ହୃଦୟରେ ଧାରଣା କରିବା ତା ପାଇଁ ବୋଧହୁଏ କଷ୍ଟକର ହୁଏ । ସେ ଭାଗଦେବାକୁ ଚାହେଁ । ବାଣ୍ଟି ଦେବାକୁ ଚାହେଁ ।

ଅନୁଭୂତିରୁ କ'ଣ କିଛି ବଣ୍ଟାଯାଇପାରେ ? ଅନୁଭବ ତ ଏକାନ୍ତ ବ୍ୟକ୍ତିଗତ । ମାତ୍ର ଅନୁଭବରେ ପାଇଥିବା ସୁଖ ଦୁଃଖ ଠିକକ ? ସେଥିରେ ତ ନିଖିଳ ବେଦନାର ସ୍ପର୍ଶ ରହିଛି । ଅଖିଳ ବିଶ୍ୱର ଭାଗ ବି ରହିଛି । କବି ଆତ୍ମ-ବେଦନାର ଗୁପ୍ତ ସୁଡ଼ଙ୍ଗ ଦେଇ ନିଜ ସୀମାୟିତନର କାରାକକ୍ଷ ଭିତରୁ ବିଶ୍ୱ-ପ୍ରାଙ୍ଗଣର ବିମୁକ୍ତ ଭିତରକୁ ବାହାରିଆସେ । ସେ ପଥ ଅବଶ୍ୟ ସହଜ ସାବଲୀଳ ନୁହେଁ; ବରଂ ସଂଗ୍ରାମମୁଖର, ଦୁର୍ଗମ, କ୍ଳେଶପ୍ରବଣ ଓ କ୍ଳାନ୍ତିକର । ତଥାପି ପ୍ରାନ୍ତରେ ଏକ ଦୁର୍ବାର ଆଶା, ଏ ପଥର ଶେଷରେ ଏକ ମଧୁର ସମ୍ବୋଧନ ଯେପରି ରୂପ ଧରି ଉଭା ହୋଇଛି—ତାହା ବିଶ୍ୱ ପ୍ରାଣର ସହୃଦୟତା । ସେଇ ସହୃଦୟତା ନିକଟରେ ମଣିଷ ନିଜକୁ ଖୋଲିଦିଏ, ଅଜାଡ଼ିଦିଏ । ଜାଣେ, ସେ ନୂଆ କିଛି କାହାରିକୁ ଶୁଣାଉ ନାହିଁ । ସମସ୍ତେ ସବୁ କିଛି ଭିତରେ ବଞ୍ଚିଛନ୍ତି ଓ ବଞ୍ଚୁଛନ୍ତି । ପ୍ରକୃତି ପବନ, ଧୂଳିକଣା, ଆକାଶର ଜ୍ୟୋତିଷ୍କମଣ୍ଡଳ ଓ ସମୁଦ୍ର ତଳର ଅନ୍ଧକାର ଭିତରେ ଭାବସ୍ପନ୍ଦନ ମୌନ ହୋଇ ରହିଛି । ତଥାପି ସେ ସ୍ପନ୍ଦନର ମୃଦୁ ସ୍ପର୍ଶକୁ ମଣିଷ ଯେ ନୂଆକରି ଲାଭ କରିଛି, ସେ ସମ୍ବାଦଟାଇ ସେ ପରିବେଷଣ କରିପିବ । ଅଜାତର ଅଭିଜ୍ଞତା ପୁସ୍ତକରେ ଆଉ ଏକ ପୃଷ୍ଠା ସଂଯୁକ୍ତ ହୋଇଯାଉ; ମାତ୍ର ତାହା ପୁନରୁକ୍ତି ନୁହେଁ ଏବଂ ସବୁ ପ୍ରାପ୍ତି ଯେ ସ୍ୱତନ୍ତ୍ର, ଆଗନ୍ତୁକ କାଳ ପାଇଁ ଏହାହିଁ ତା'ର ସନ୍ଦେଶ ହୋଇରହିବ ।

ଅଜସ୍ର ଜନ୍ମ ପ୍ରବାହ ଭିତରେ ପ୍ରତିଟି ଶିଶୁର କ୍ରନ୍ଦନରେ ସେଇ ଜନ୍ମ-ମୁହୂର୍ତ୍ତଟିର ତାତ୍ପର୍ଯ୍ୟ ସୃଷ୍ଟି ପ୍ରାଙ୍ଗଣରେ ଶଙ୍ଖଧ୍ୱନି ହୋଇ ପ୍ରଚାରିତ ହୋଇଯାଏ । ଶିଶୁଟିଏ ଜନ୍ମ ହେବାରେ ନୂଆ ବା କ'ଣ ଅଛି ? ମାତ୍ର ପ୍ରାଣର ସ୍ପନ୍ଦନକୁ ଧାରଣ କରି ଏକ ଅମୂର୍ତ୍ତ ଆକାଂକ୍ଷା ମୂର୍ତ୍ତି ବିଗ୍ରହ ରୂପରେ ପୃଥିବୀ ସ୍ୱତନ୍ତ୍ର ସମ୍ପର୍କ ବାନ୍ଧିବାକୁ ଆସିଛି । କାଳର ନିରବଚ୍ଛିନ୍ନ ପ୍ରବାହ ଭିତରେ ଗୋଟାଏ କ୍ଷୁଦ୍ର

ମୁହୂର୍ତ୍ତ ଯେପରି ଏକ ଅସୀମ ବ୍ୟାପ୍ତି ଦେହରେ ଅସ୍ତିତ୍ୱର ଗାରକାଟି ଛକବନ୍ଧ ରୂପେ ଉଭା ହୋଇଯାଉଛି । ଏ ଏକ ପରମ ମୁହୂର୍ତ୍ତ, ଦୁର୍ଲଭ ମୁହୂର୍ତ୍ତ, ଯାହା ଅସ୍ତିତ୍ୱର ସ୍ୱପ୍ରକାଶ ପାଇଁ ସେଇ ଶିଶୁର ରୂପାଧାରରେ ଅନ୍ୟ ସବୁ ମୁହୂର୍ତ୍ତଠାରୁ ସ୍ୱତନ୍ତ୍ର, ଭିନ୍ନ, ଅନନ୍ୟ ଓ ମହାର୍ଘ୍ୟ ।

ପୃଥିବୀ ପାଇଁ ତ କେହି ବି ପୁରୁଣା ନୁହନ୍ତି । ସବୁ ସୃଷ୍ଟିକୁ ସେ ନୂତନର ସମାଦର ଦିଏ । ଅଭ୍ୟର୍ଥନା କରେ । ପାଣି, ପବନ, ଆଲୁଅ ଦେଇ, ବକ୍ଷରେ ସ୍ଥାନ ଦେଇ, ଏ ଧରଣୀ ଚିରନ୍ତନକୁ ସଦ୍ୟତମର ମହିମା ଦାନକରେ । ପୃଥିବୀ ସବୁ କୁଆଁରବକୁ କାନଡେରି ଶୁଣେ । ଅଜସ୍ର ଶବ୍ଦଙ୍କର ଭିଡ଼ ଭିତରୁ ସ୍ପଷ୍ଟ ଓ ସ୍ୱତନ୍ତ୍ର କରି ଶୁଣେ । ପ୍ରତିଟି ଜନ୍ମ ପାଇଁ ଅପେକ୍ଷାକରେ ଓ ପ୍ରତିଟି ଜୀବ ପାଇଁ ନିଜକୁ ନୂଆକରି ସଜାଏ । ସତେ ଯେପରି ପ୍ରତିଟି ଆଗନ୍ତୁକ ସୃଷ୍ଟି ପାଇଁ ପୃଥିବୀ ନିଜେ ନୂଆ ହୋଇ ଜନ୍ମ ନିଏ । ପୁରୁଣା ପୃଥିବୀ ଏମିତି ପ୍ରତି ମୁହୂର୍ତ୍ତରେ ପୂର୍ବାଣୀ ତରୁଣୀ ସାଜି ରହିଥାଏ । ସୃଷ୍ଟି ଜୀବନର ପ୍ରତିଟି ଅନୁଭବରେ ପୃଥିବୀ ନୂତନତାର ସ୍ୱାଦୁ ପାଏ । ପ୍ରତିଟି ଅଭିଜ୍ଞତାରେ ସ୍ୱୟଂ ଜୀବନ ଯେମିତି ନୂଆ ହୋଇଯାଏ । ନୂଆ କରି ଚିରନ୍ତନତାକୁ ସ୍ମରଣ କରିବସେ । ପ୍ରତିଟି ହସକାନ୍ଦ ଭିତରେ ଚିରନ୍ତନତାର ଅଲଂଘ୍ୟ ଦାବୀକୁ ନୂଆକରି ବ୍ୟକ୍ତି-ଚେତନାରେ ସାବ୍ୟସ୍ତ କରି ନେଇଯାଏ ।

କହିଯାଏ, କିଛି ଅଯଥାର୍ଥ ନୁହେଁ । କେହି ବି ମୂଲ୍ୟହୀନ ନୁହନ୍ତି । ଜୀବନ ପୁନରବୃତ୍ତ ନୁହେଁ । ମଣିଷ ଯେ ନିଜର ମୂଲ୍ୟ ଖୋଜି ବୁଲୁଛି, ସେହି ଅନ୍ୱେଷଣର ଭାଷା ହିଁ ତା'ର ସୁଖ ଦୁଃଖର ସଙ୍ଗୀତ ।

ଅନ୍ୱେଷଣ ତ ପରମ ଆଶାସ୍ତି ! ଏ ଅନ୍ୱେଷଣ ଭିତରେ ସେଇ ଆଶାଟି ବଳବତ୍ତର ଯେ ଯେଉଁ ମୂଲ୍ୟକୁ ସାରାଜୀବନ ଧରି, ଜନ୍ମ ଜନ୍ମାନ୍ତର ଧରି ସିଏ ନିଜ ଭିତରେ ଖୋଜିଚାଲିଛି ଓ ତା'ର ପରିପାର୍ଶ୍ୱରେ ଖୋଜିଚାଲିଛି, ସମ-ସାମୟିକତାରେ ଖୋଜୁଛି ଓ ଚିରନ୍ତନତାରେ ଖୋଜୁଛି, ସେ 'ମୂଲ୍ୟ' ନିଶ୍ଚୟ ଅଛି; କେଉଁଠାରେ, କିପରି ଭାବରେ, ହୁଏତ ସଂଗୁପ୍ତ ହୋଇଅଛି । ସକଳ ଉଚ୍ଚାରଣରେ ତାକୁଇ ଆହ୍ୱାନ, ସକଳ ଶିଳ୍ପ ସୃଷ୍ଟି ତାରି ଉଦ୍ଦେଶ୍ୟରେ ଅଭିଗମନ । ସେଇ ହିଁ ଲକ୍ଷ୍ୟ ଏବଂ ତାରି ଉପଲକ୍ଷ୍ୟ ଏ ଜଗତ । ନିଖିଳ

ହୃଦୟର ଦ୍ଵାରଦେଇ ଛାର୍ଥମଣ୍ଡପକୁ ଯିବାର ଏ ଅଜସ୍ର ପଥ ସଙ୍ଗୀତରେ ବ୍ୟକ୍ତି ପ୍ରାଣରେ ସକଳ ପ୍ରକାଶ ଆକୁଳତା ନହିତ । କାବ୍ୟ ସମାବେଶ ତାହାର ବନ୍ଦନା-ଗୀତ ।

ମରଣ ମଧ୍ୟ ଏ ଆକୁତିକୁ ବିନାଶ କରିପାରେ ନାହିଁ । ବରଂ ତା'ର ବିଶାଳ ଅକୂପାର-ବକ୍ଷରେ ବ୍ୟକ୍ତିପ୍ରାଣର କ୍ଷୁଦ୍ର ଉଚ୍ଛ୍ୱାସଟିକୁ ମିଶାଇ ଦେଇ ଅନାଗତ ମହାକାଳ ପାଇଁ ସଯତ୍ନରେ ସାଇତି ରଖେ, ପୁଣି ଅଜସ୍ର କରି ଆକାଶ ପୃଥିବୀ ବାଣ୍ଟିଦିଏ । ଆକାଶ ଅବନୀର ମହାଅଜଣା ଅନନ୍ତ ସ୍ୱପ୍ନକୁ ଜୀବନରେ ଗୋଟିଏ ଆଲୋକସ୍ପନ୍ଦିତ ମୁହୂର୍ତ୍ତ ପ୍ରତି ଲକ୍ଷ୍ୟ ନିବଦ୍ଧ କରିଯାଏ ।



—

Digitized by srujanika@gmail.com

# ସ୍ୱର ଓ ଛାୟା

କଥାମାନେ ଏକ ହାହାକାର ?

ଏକ ଯନ୍ତ୍ରଣାର ସ୍ୱରଲିପି ?

କଥା ମାନେ ଅଫୁଟା କଢ଼ିର ଅକୁହା ଭାଷା, ମୁଦା ଆଖିର ସ୍ୱପ୍ନ, ଅପେକ୍ଷାର ବେଦନା ମଥିତ ଗୁହାରି ?

କଥାମାନଙ୍କ ଭିତରେ ଏମିତି କ'ଣ ଅଛି ଯାହା ହୃଦୟକୁ ମନ୍ଥିଦିଏ ?

କଥାମାନେ କେବେ ଅସ୍ପୃଶ୍ୟ ରହିପାରିବେ କି ? ସେମାନେ ଶ୍ରୋତାକୁ ଅପେକ୍ଷା ରଖନ୍ତି । ଶ୍ରୋତା ନ ଥିଲେ ବି ଆପଣା ମନକୁ ଗୁଣୁ ଗୁଣୁ ହୋଇ ଉଠନ୍ତି । ଯେମିତି ଲହରୀର ଉଦ୍‌ବେଳ, ପବନର ସନସନ, ପତ୍ରର ମରମର୍ ।

ଆପଣାକୁ ବାଢ଼ି ନ ଥୋଇବା ପର୍ଯ୍ୟନ୍ତ ଛୁଟି କାହିଁ ଏ ଛଟପଟରୁ ? ପ୍ରକାଶ ଅପେକ୍ଷାରେ ସାରା ସୃଷ୍ଟି । ଅନ୍ଧାରର ଜଠରରୁ ଆଲୋକର ସୃଷ୍ଟି ହେବା ଆଗରୁ କିଏ କ'ଣ ଦେଖିବାକୁ ଚାହିଁଥିଲା ? କିଏ ବା କ'ଣ ସେଦିନ ଦେଖାଇବାକୁ ଚାହିଁଥିଲା ? କାହାର ପ୍ରୟୋଜନରୁ ସୃଷ୍ଟି ଏ ଆଲୋକର ?

ଦେଖଣାହାରୀ ସତରେ କ'ଣ କେହି ସେ ଦିନ ଥିଲେ ? ମହାଶୂନ୍ୟର ଅନ୍ଧାର ଗୁମ୍ଫରେ ପ୍ରଥମ ରଶ୍ମିରେଖାଟି କ'ଣ ଦେଖିବାକୁ ପାଇଥିବ ନିଜଛଡ଼ା ? ଅଥବା ସ୍ରଷ୍ଟା କ'ଣ ଦେଖିଥିବେ ଝଲକାଏ ରଶ୍ମିଧାର ଛଡ଼ା ? ଆପଣାଠାରେ ସଂଗୁପ୍ତ ସେ ଆଲୋକ କପରି—ସେତିକି ପ୍ରତ୍ୟକ୍ଷ ଦେଖିବାକୁ ଚାହୁଁଥିଲେ ସେ ରୂପସଜ୍ଜା ? ସ୍ରଷ୍ଟା କ'ଣ ନିଜ ଆଖିରେ ନିଜ ରୂପକୁ ଦେଖିବା ପାଇଁ ନିଜ ଭିତରୁ ଆଲୋକକୁ ବାହାରକୁ କାଢ଼ି ଆଣିଲେ । ଆଉ ନିଜର ସେ ରୂପ ଏତେ ସୁନ୍ଦର, ଏତେ ମନମୁଗ୍‌ଧକର, ଏତେ ଭଲ ଲାଗିଲା ଯେ, ସେ ଅସୁମାରି ଅଙ୍ଗଭଙ୍ଗୀରେ, ଅସୁମାରି ବେଶ ବଦଳାଇ, ଆକାର ବଦଳାଇ, ହାବଭାବ ବଦଳାଇ, ଢଙ୍ଗ ବଦଳାଇ ଓ ରଙ୍ଗ ବଦଳାଇ କୋଟିର କୋଟି ସୃଷ୍ଟିର ରୂପ ସାଜରେ ଆପଣାକୁ ପ୍ରଦର୍ଶିତ କରି ଚାଲିଲେ ! ଦେଖଣାହାରୀ ମଧ୍ୟ ତାଙ୍କ ନିଜ ଛଡ଼ା ଆଉ କେହି ନ ଥିବେ । ସେଥିପାଇଁ ନିଜ ଆଖିକୁ ଅସୁମାରି ଆଖି

କରିଦେଲେ ! ସେ ଆଖି ଭିତରେ ରୂପର ଅଶେଷ ପିପାସା ଭରିଦେଲେ ଏବଂ ସବୁ ଆଖିରେ ନଜର ପ୍ରଥମ ଅଦେଖା ରୂପଟିକୁ ଖୋଜି ଦେଲେ ! ପ୍ରତ୍ୟେକ ନିଜ ରୂପରେ ମୁଗ୍‌ଧ ହେବା, ଆବିଷ୍ଟ ହେବାର ମୂଳ ପ୍ରବଣତାଟି କ'ଣ ସେଇ ଅସତର୍କ ବେଳର ଈଶ୍ୱରଙ୍କ ଚେହେରାକୁ ନିଜ ଭିତରେ ଆବିଷ୍କାର କରିନେବା କିମ୍ବା ଈଶ୍ୱରଙ୍କ ମୁଗ୍‌ଧତାରୁ କିଛି ଆପଣା ହୃଦୟରେ ଉତ୍ତୁରି ଆସିବାର ଅନୁଭବ କରିବା ? ନିଜ ଆଖିରେ କିଏ ବିରୂପ ? କାହାକୁ ନିଜ ସୌନ୍ଦର୍ଯ୍ୟ ପ୍ରୀତିକର ମନେ ନ ହୋଇଛି ?

ଏ ଦେଖାଗୁଡ଼ିକ ପୁଣି ସୃଷ୍ଟିରୁ ସୃଷ୍ଟିକୁ ଆପେ ଆପେ ପ୍ରସାରିତ ହୋଇଛି । ଜନନୀର ଆଖିରେ, ଜନକର ଆଖିରେ, ଆତ୍ମୀୟତାର ଆଖିରେ, ପ୍ରଣୟର ଆଖିରେ ! ଦୃଶ୍ୟଜଗତ ପ୍ରସାରିତ ହୋଇଛି ବ୍ୟକ୍ତି ଓ ପ୍ରକୃତିକୁ । କେଉଁଠି ସୌନ୍ଦର୍ଯ୍ୟ ବାହ୍ୟ, ରୂପାଶ୍ରିତ, କେଉଁଠି ଅନ୍ତଃସୁଷମାର ଉଜ୍ଜ୍ୱଳତା ସ୍ନିଗ୍‌ଧ, କେଉଁଠି ବା ଅରୂପର ମାଧୁରୀରେ ଅଭୁଲା ଆକର୍ଷଣରେ ସମ୍ମୋହନୀ ମନ୍ତ୍ର । ସେ ସୌନ୍ଦର୍ଯ୍ୟ କେଉଁଠି ସ୍ୱର, କେଉଁଠି ସଙ୍ଗୀତ, କେଉଁଠି ଛନ୍ଦ । ପୁଣି କେଉଁଠାରେ ନୀରବତା ମଧ୍ୟ ସୁନ୍ଦର ।

ସୁନ୍ଦରର ଏକ ନିଜସ୍ୱ ଝଲକ ଅଛି । ନିଜେ ଐଶ୍ୱର୍ଯ୍ୟର ଝଲକରେ ସେ ବେଳେ ବେଳେ ହଠାତ୍ ଜଣା ହୋଇଯାଏ । ସେ ସୌନ୍ଦର୍ଯ୍ୟର ପରିମାପ କ'ଣ ଓ କିପରି ତା'ର ବର୍ଣ୍ଣର ବାହାରେ, ପ୍ରତ୍ୟେକ ଦର୍ଶକର ସ୍ୱତନ୍ତ୍ର ଦର୍ଶନ-ସାମର୍ଥ୍ୟ ଭିତରେ ସେ ରାଜ୍ୟର ଦିଗ୍‌ବଳୟ ଉନ୍ମୋଚିତ ହୋଇଥାଏ । ରୂପରେ ଉଦ୍‌ଭାସ ଓ ଅରୂପରେ ଆଭାସ, ସବୁ ସେଇ ସୌନ୍ଦର୍ଯ୍ୟର ଅପରୂପ ମହିମା ପ୍ରକାଶର ଲୀଳାବିଳାସ ବୋଲି ଯେ ବେଳେ ବେଳେ ବୁଝା ପଡ଼ିଯାଏ, ତାହା କ'ଣ ସ୍ୱୟଂ ସୌନ୍ଦର୍ଯ୍ୟ ଆପଣଙ୍କୁ ଆପେ ଟିକେ ଦେଖି ନେଇ ମୁହୂର୍ତ୍ତିଟି ହୋଇ ଝଲସିଯାଏ ।

ସ୍ରଷ୍ଟା କ'ଣ ସ୍ୱୟଂ ସୌନ୍ଦର୍ଯ୍ୟର ପ୍ରତିମା ଓ ସୌନ୍ଦର୍ଯ୍ୟର ଆଖି ବି ? ମଧୁରତାର ମହକ ଓ ମଧୁରତାର ବାଣୀ ରୂପ ବି ? ନିଜ ଆଖିରେ ଧନବାନ୍ତି ନିଜକୁ ହିଁ ଦେଖୁଥାନ୍ତି, ନିଜ କଥା ନିଜକୁ କହୁଥାନ୍ତି ଓ ନିଜକୁ ନିଜେ ଶୁଣି ଭୁଲିଥାନ୍ତି ? ତଥାପି ସେ କଥା ଅସରା ରହିଯାଏ ? ଈଶ୍ୱରଙ୍କ କଥା କେବେ ସରିପାରେ ? ନା, ସୃଷ୍ଟି ଶୁଣିବାରୁ କ୍ଷାନ୍ତ ରହିପାରେ ? ସେ କଥା ଯଦି ମଧୁର ହୋଇ ନ ଥାନ୍ତା, ପ୍ରାଣକୁ ଛୁଇଁ ନ ଥାନ୍ତା ? କିଏ ତାକୁ ଶୁଣନ୍ତା ? ହୁଏତ

ଈଶ୍ୱରଙ୍କ ରୂଢ଼ ବଚନ ବି କେଉଁ ସୂକ୍ଷ୍ମଭାବ୍ୟକୁ ପ୍ରକାଶ କରେ, କେଉଁ କ୍ରନ୍ଦନ ବି ବେଦନାତନ୍ତ୍ରୀକୁ ସ୍ପର୍ଶାତୁର କରି ରଖେ । ତାଙ୍କର କେଉଁ ଗଦ୍ ଗଦ୍ ଭାଷାରେ ପ୍ରଣୟର ଉଚ୍ଛଳତା କିମ୍ବା ମୌନତାରେ ପ୍ରଣୟର ନୀରବ ସ୍ୱୀକୃତି, ତାହା କ'ଣ ସୃଷ୍ଟିକୁ ବୁଝାଇବାର ଅପେକ୍ଷାରେ ?

ମୌନତା ବି ଯେ ଏକ ଭାଷା, ଭାବ-ବିନିମୟ-ସମର୍ଥ ଭାଷା, ଭାବ-ବିନିମୟର ସୁନ୍ଦରତମ ଭାଷା ! ଖୋଲା ଓଠ ଅପେକ୍ଷା ବନ୍ଦ ଓଠର ଭାଷା ଅନେକ ସ୍ପଷ୍ଟ । ଖୋଲାଆଖି ଅପେକ୍ଷା ମୁଦାଆଖିର ଦେଖା ଅଧିକ ଅନ୍ତର୍ଭେଦୀ । ପ୍ରସାରିତ ବାହୁ ଅପେକ୍ଷା ଆପଣା ଗୁଣ୍ଡିରେ ଛନ୍ଦି ହୋଇଥିବା ହାତ ଦୁଇଟି ଅଧିକ ଆଶ୍ଳେଷ ବ୍ୟାକୁଳ, ସେକଥା ଏ ସୃଷ୍ଟିରୁ ବୁଝିବାକୁ ହୁଏ । ଈଶ୍ୱରଙ୍କୁ ବି । ଖୋଲା ଆଖି ଓ ବନ୍ଦ ଆଖିର ତଫାତ୍‌କୁ ସେ କିପରି ଦେଖୁଥିବେ ? ମନ୍ତ୍ର ପାଠ ଓ ନୀରବ ଧ୍ୟାନକୁ ସେ କିପରି ଶୁଣୁଥିବେ ? ଉଦ୍ଦଣ୍ଡ କୀର୍ତ୍ତନ ଓ ଧୀରଗାନକୁ ସେ କିପରି ବୁଝୁଥିବେ, ତାହାହିଁ ତାଙ୍କ ନିଜ ପାଖେ ତାଙ୍କ ସ୍ରଷ୍ଟାପଣର ପ୍ରମାଣ ହୋଇ ଉଭା ହେଉଥିବ ।

ଈଶ୍ୱର ଆପଣାପାଖେ ମଧ୍ୟ ଏକ ପ୍ରହେଳିକା । ଆପଣାକୁ ପ୍ରହେଳିକାମୟ କରି ସୃଷ୍ଟି ପାଖେ ବାଢ଼ିଦିଅନ୍ତି ବୋଲି ସୃଷ୍ଟି ଭିତରୁ ସମାଧାନ ଖୋଜି ହୁଅନ୍ତି । ପୁଣି ସମାଧାନ ଖୋଜିବା ଆଳରେ ନିଜକୁ ନିଜର ସମ୍ଭାବନାର ଅଧିକାଧିକତା ଶୁଣାଉଥାନ୍ତି ଓ ଶୁଣୁଥାନ୍ତି । ସମାଧାନର ସମାପ୍ତ ବିନ୍ଦୁଟାଣି ନିଜ ପାଇଁ ନିଜ କଥା ଶେଷ କରିଦିଅନ୍ତି ନାହିଁ କେବେ ।

ଆପଣାର ସ୍ୱର ଏତେ ମଧୁର ? ଆପଣା ରୂପ ଏତେ ସୁନ୍ଦର ? ଆପଣା ପ୍ରେମ ଏତେ ନିବିଡ଼ ?

ଈଶ୍ୱର କ'ଣ ସେ ନାରସିସସ୍ ?

ଏ ବିଶ୍ୱସୃଷ୍ଟି ତାଙ୍କର ନିଜକୁ ହିଁ ଦେଖୁଥିବା ଅସଂଖ୍ୟ ପ୍ରତିଛବି ? ଅଜସ୍ର ସ୍ୱରରେ ତାଙ୍କର ନିଜ ସ୍ୱରର ପ୍ରତିଧ୍ୱନି ? ସବୁ ରୂପ ସୁନ୍ଦର, ସବୁ ସ୍ୱର ମଧୁର । ତଥାପି ଅତୃପ୍ତି···ପୁଣି ରୂପର ରଚନା, ସ୍ୱର ସଂରଚନା ।

'ଧ୍ୱନି ସୃଷ୍ଟି ହେଉ ।' ସୃଷ୍ଟିର ଆଦ୍ୟକାଳରେ ନିଜ କଣ୍ଠର ଏ ପ୍ରଥମ ବ୍ୟକ୍ତ ଧ୍ୱନିକୁ ସ୍ରଷ୍ଟା କିପରି ଶୁଣିଥିବେ ? ବିଶ୍ୱବ୍ରହ୍ମାଣ୍ଡ ତାହାକୁ ପ୍ରତିଧ୍ୱନି କରି ଶୁଣାଇ ଦେବାବେଳେ ସେ କିଭଳି ଚମକିଥିବେ ? କି ଅର୍ଥ ସେଥିରୁ ବୁଝିଥିବେ ?

ଶିଶୁର ପ୍ରଥମ କ୍ରନ୍ଦନ ଧ୍ୱନିରେ ମାତା-ପିତାଙ୍କ ହୃଦୟରେ ଯେ ବିସ୍ମୟ ଆନନ୍ଦ ବିହ୍ୱଳତାର ଚମକ, ସେ କ'ଣ ସେଇ ଐଶ୍ୱରିକ ମୁହୂର୍ତ୍ତର ସ୍ପନ୍ଦନ-ସାକ୍ଷ୍ୟ ?

ସୃଷ୍ଟି ସଙ୍ଗେ ଭାବ ବିନିମୟର କେଉଁ ବ୍ୟାକୁଳତାରୁ ଐଶ୍ୱରିକ ଧ୍ୱନିର ସଂଜାତ ? କ'ଣ ତାଙ୍କର ସୃଷ୍ଟିକୁ ଜଣାଇବାକୁ ଥିଲା ? ସୃଷ୍ଟି କ'ଣ ବୁଝିଲା ଓ ତା'ର ପ୍ରତ୍ୟୁତ୍ତର କଲା ? ସେ ବୁଝାମଣାର ରହସ୍ୟାଳାପ ତ ଏ ଯାବତ୍ ସୃଷ୍ଟି ବକ୍ଷରେ ସ୍ରଷ୍ଟାଙ୍କ ସହ ପ୍ରଶ୍ନ ଉତ୍ତରର ଧ୍ୱନି ପ୍ରତିଧ୍ୱନି ଛଳରେ ବାଜିଚାଲିଛି । ପ୍ରତିସ୍ତରରେ, ଅଚେତନର, ଚେତନର, ଜଡ଼ର, ଜୀବର ଭିନ୍ନ ଶବ୍ଦ, ଭିନ୍ନ ପ୍ରକାଶ, ଭିନ୍ନ ପ୍ରତ୍ୟୁତ୍ତର ।

ଈଶ୍ୱର କ'ଣ ଆପଣାର ସ୍ୱର ପରୀକ୍ଷା କରୁଛନ୍ତି ? ଅସୁମାର ସ୍ୱରର ମାଧୁରୀ ତୁଳନା କରୁଛନ୍ତି ? ସବୁ ନିଜ ସ୍ୱର ବୋଲି ଭଲ ଲାଗୁଛି । ଅଥଚ କେଉଁଟା ବି ପରିପୂର୍ଣ୍ଣ ଭାବେ ତୃପ୍ତିକର ମନେ ହୋଇନାହିଁ । ସର୍ବୋତ୍କୃଷ୍ଟ ମନେ ହୋଇନାହିଁ ।

ଈଶ୍ୱରଙ୍କ ସୃଷ୍ଟିର ସେହି ଅପକର୍ଷଟି କ'ଣ ? ତାହା କ'ଣ ଅପୂର୍ଣ୍ଣତା ? ବିକୃତି ? ଛାୟାଟି ସତ୍ତ୍ୱର ବିକୃତି ଭଳି ? ଏ ଅପରୂପ ସୃଷ୍ଟି; ତଥାପି ସ୍ରଷ୍ଟାର ପୂର୍ଣ୍ଣ ସ୍ୱରୂପ ନୁହେଁ । ସୃଷ୍ଟିର ସେ କୁରୂପତା କଣ ଈଶ୍ୱରଙ୍କର ନିଜ ପ୍ରତିଚ୍ଛାୟା ? ସୁନ୍ଦର ଭଳି, ମଧୁର ଭଳି, କୁତ୍ସିତତା ବି କ'ଣ ଈଶ୍ୱରୀୟ ଦର୍ପଣରେ ପ୍ରତିବିମ୍ବିତ ସତ୍ୟଟିଏ; ଅଥଚ ଯେ ପ୍ରତିବିମ୍ବ ବିଭଙ୍ଗ, ବିକଳ, ବିକୃତ ବୋଲି ହିଁ କୁତ୍ସିତ ? ସ୍ରଷ୍ଟା କ'ଣ ସୃଷ୍ଟିର ଆଖିରେ ନିଜର ସେ ଛାୟାକୁ କୁରୂପ କରି ହିଁ ଦେଖୁଥିବେ ଓ ଆପଣାର ଐଶ୍ୱରିକ ଆଖିରେ ଅରୂପର ଛାୟାହୀନ ସୁନ୍ଦରତାକୁ ବୁଝୁଥିବେ ? ସେ ପୁଣି ବୁଝୁଥିବେ ଯେ ଆପଣା ପାଇଁ ତାଙ୍କର କୌଣସି ଛାୟାର ସ୍ୱୀକୃତି ନ ଥିବା ବେଳେ ସୃଷ୍ଟିର ଆଖିରେ ସେ ଏକ ବିରାଟ ରହସ୍ୟମୟ ଛାୟାର ପ୍ରହେଳିକା ? ଅଥବା ତାଙ୍କର ଅଜଣା ହେବାର ରହସ୍ୟ ହିଁ ସୃଷ୍ଟି ପାଇଁ ଏକ ଛାୟାର ମାୟାବରଣ ରଚନା କରିଥାଏ ।

ସବୁ ଜାଣିଥିବା ଈଶ୍ୱର ପୁଣି ଅଜଣାର ରହସ୍ୟକୁ କିପରି ବିଛାଇ ଦିଅନ୍ତି ? ସବୁ ଦେଖୁଥିବା, ବୁଝୁଥିବା ଈଶ୍ୱର ଅଦେଖାର ରହସ୍ୟ ବିସ୍ମୟକୁ କିପରି ସୃଷ୍ଟି କରନ୍ତି ? ଜାଣି-ଅଜଣା ଏ ବିରୋଧାଭାସକୁ କିଭଳି ସମ୍ଭାଳିଥାନ୍ତି ?

ସେଇ ସମ୍ଭାଳିନେବା କ'ଣ ତାଙ୍କର ସର୍ବୋତ୍ତମ ଐଶ୍ୱରିକତା ?

# ଭିନ୍ନଦେଖା

ସାଧାରଣ ବ୍ୟକ୍ତି ଦୁଇ ଆଖିରେ ଗୋଟିଏ ଜିନିଷକୁ ଦେଖନ୍ତି, ବାହାରର ପୃଥିବୀକୁ । କବି ଗୋଟିଏ ଆଖିରେ ବାହାରକୁ ଦେଖେ, ଅନ୍ୟ ଆଖିରେ ଭିତରକୁ, ଅନୁଭବ ଜଗତକୁ । ବାହାର ଭିତର, ଘଟଣା ଓ ଅନୁଭବର ଦ୍ୱନ୍ଦ୍ୱରେ ଏଇଠାରେ ସେ ଜଡ଼ିତ ହୋଇପଡ଼େ । କବିର ପୁଣି ଭିନ୍ନ ଏକ ତୃତୀୟ ଆଖି ଅଛି । ସେ ଆଖିରେ ସେ ଏମାନଙ୍କର ଊର୍ଦ୍ଧ୍ୱସ୍ଥିତିକୁ ଦେଖେ । ସେଠାରୁ ଏମାନଙ୍କର ସମନ୍ୱୟ ଭିତ୍ତିକୁ ଆବିଷ୍କାର କରେ ।

କବି ନିଜକୁ ଦେଖିବା ଭିତରେ ବିଶ୍ୱ ବ୍ରହ୍ମାଣ୍ଡକୁ ଦେଖେ । ପୁଣି ବିଶ୍ୱର ପ୍ରତି ସତ୍ତ୍ୱରେ ଆପଣାର ଅନୁଭବକୁ ପ୍ରତିଫଳିତ ଦେଖେ । ପ୍ରତିଟି ସତ୍ତ୍ୱକୁ ସଙ୍କୁଳିବାକୁ ଯାଇ ନିଜ ସହ ଏକାତ୍ମ ହୁଏ । ତାର ହସ କାନ୍ଦ ସହ ଜଡ଼ିତ ହୋଇ ନିଜ ହସକାନ୍ଦରେ ବିଶ୍ୱଭୁବନର ଆଖି ଓଠକୁ ଉତାରି ଆଣେ ।

ସବୁ କିଛି ଏଠାରେ ତ ନିଜ ପ୍ରୟୋଜନର ଆଖିରେ ହିଁ ଦେଖାଯାଇଥାଏ । ଶୋଷ ସମୁଦ୍ର ପାଖରେ ପହଞ୍ଚି ତାକୁ କେବଳ ଲୁଣି ବୋଲି ଜାଣେ । ହୁଏତ ଠିକ୍ ସେଇ ଭାବରେ ସେ ଝରଣାକୁ ମିଠାଧାର ବୋଲି ଗ୍ରହେ । ମାତ୍ର ସେ ଦେଖା ଝରଣାଟି ସଂପର୍କରେ ତାର ଶେଷ ଦେଖା ନୁହେ । ହୁଏତ ସେଇପରି ଦେଖାରେ ମରୁଭୂମିର ଆକାଶ ଉତ୍ତପ୍ତ, ମରୁ-ପୃଥିବୀ ନିଦାରୁଣ । ପ୍ରୟୋଜନ-ନିରପେକ୍ଷ ଗୋଟିଏ ବିମୁକ୍ତ ଦୃଷ୍ଟି ନେଇ ଏ ଧରଣୀର ସତ୍ୟକୁ, ଆକାଶର ଓ ସମୁଦ୍ରର ସତ୍ୟକୁ କିଏ ଦେଖିଛି ? ଆକାଶର ଅବାରିତତ୍ୱକୁ, ସମୁଦ୍ରର ଅତଳତାକୁ, ପୃଥିବୀର ସଜୀବ ମମତାକୁ କିଏ ପୂରାପୂରି ଭେଟି ପାରିଛି ? ଅଥଚ ସେତିକି ଦେଖିବାପାଇଁ ତ ସତ୍ତ୍ୱ ବାରବାର ପୃଥିବୀକୁ ସମାଗତ ହେଉଥିବ ଓ ତାର ପୂର୍ଣ୍ଣ ଦେଖାହୋଇ ନ ପାରିବାଯାଏ, ସୃଷ୍ଟିନିହିତ ମୂଳ ଅଭୀପ୍ସାଟି ସମାହିତ ହୋଇପାରିବ ନାହିଁ ।

ସବୁ ଆଖିତ ସୁନ୍ଦରକୁ ଦେଖେ, ଚାହେଁ । ମାତ୍ର ଅନ୍ତର୍ନିହିତ ସୌନ୍ଦର୍ଯ୍ୟକୁ, ସେଇ ସୁନ୍ଦରତାର ପ୍ରକାଶ-ସ୍ୱରୂପ ଓ ପ୍ରକାଶ-କାରଣକୁ ସନ୍ଧାନ କରିପାରେ କବିଦୃଷ୍ଟି । ଆଉ ସବୁ ଦେଖା ବସ୍ତୁନିର୍ଭର । ଫୁଲଟି ଫୁଲପରି ସୁନ୍ଦର— ଇଏ

ସାଧାରଣ ଦେଖା । ମାତ୍ର କବିର ଦେଖା କେବଳ ରୂପ-ନିବଦ୍ଧ ନୁହେଁ, ତାହା ହୃଦୟନିର୍ଭର । ଫୁଲଟିର ରଙ୍ଗ ସୌନ୍ଦର୍ଯ୍ୟରେ ମୁଗ୍ଧ ତାର ହୃଦୟାବେଗକୁ ଯେ ଫୁଲ-ସୁଷମାର ସ୍ତବଗାନ ରୂପେ ବାଢ଼ିଥାଏ । ସେ ମନଟିକକ, ପ୍ରାଣର ଆବେଗ ଟିକକ ନ ମିଶିଲେ ଫୁଲକୁ ଯେତେ ଉପମାସମ୍ଭାରରେ ସୁନ୍ଦର କରି ଥୋଇଲେ ବି, ତାହା ବର୍ଣ୍ଣନାବିଳାସ ହେବ ସିନା, କବିତା ହେବନାହିଁ; ଠିକ୍ ଯେମିତି ଫୁଲର ଟିକନଖି ବର୍ଣ୍ଣନା, ଗଠନ ବିନ୍ୟାସ ବିଶ୍ଳେଷଣ ବୈଜ୍ଞାନିକ ସତ୍ୟ ହୋଇ ରହିଥିବ, କିନ୍ତୁ କାବ୍ୟ ସତ୍ୟ ହେବ ନାହିଁ ।

ମାତ୍ର କବି ତ କେବଳ ସୁନ୍ଦରକୁ ସୁନ୍ଦର ଦେଖେ ନାହିଁ, ସେ ସୌନ୍ଦର୍ଯ୍ୟ ଦର୍ଶନରେ ଆପଣାର ଅନ୍ତରସ୍ଥ ଅନ୍ତଃସୌନ୍ଦର୍ଯ୍ୟକୁ ଛନ୍ଦାୟିତ ହେବାର ମଧ୍ୟ ଆବିଷ୍କାର କରେ । କବି ଭିତରେ ବାହାରର ସବୁ ଧ୍ୱନି ପ୍ରତିଧ୍ୱନିତ, ସବୁ ରୂପ ପ୍ରତିବିମ୍ବିତ । କାରଣ କବି ଚଉଟି ଚନ୍ଦ୍ରକାନ୍ତମଣି ତୁଲ୍ୟ ଜ୍ୟୋତ୍ସ୍ନାପରାଗମାନେ ଉଜ୍ଜ୍ୱଳ ଉଦ୍‌ଭାସିତ, ବିହ୍ୱଳ ଉଲ୍ଲସିତ । ପ୍ରତ୍ୟୁତ୍ତର ବିନା ରହିପାରେ ନାହିଁ ବୋଲି ସେ କବି, ଉତ୍ତରଟିଏ ସୁନ୍ଦର କରି ବାଢ଼ିପାରେ ବୋଲି ସେ କବି । ସୁନ୍ଦରକୁ କବି କେବଳ ଦେଖେ ନାହିଁ—ଅସୁନ୍ଦରର ମର୍ମଭେଦ ପର୍ଯ୍ୟନ୍ତ କରିଥାଏ । ଅନ୍ତରର ଦୃଷ୍ଟିରେ ଦେଖିଥାଏ ବୋଲି ସେ ଅସୁନ୍ଦର ଭିତରେ ବି ସୁନ୍ଦରର ଐଶ୍ୱର୍ଯ୍ୟକୁ ସାଉଁଟି ନିଏ, ଆଉ ଅସୁନ୍ଦରକୁ ମହାମହିମାରେ ଅଭିଷେକ କରିଦିଏ ।

କବିର ଅନେକ ଅପବାଦ : ସେ ଦୁର୍ବଳମନା, ଭାବପ୍ରବଣ, କାନ୍ଦୁରା । ଯେହେତୁ ଆସଙ୍ଗବିହ୍ୱଳ ପକ୍ଷୀଟି ଶରବିଦ୍ଧ ହୋଇଗଲେ ସେ ଅଶ୍ରୁର ମହାକାବ୍ୟ ରଚନା କରିଦିଏ । ଅଧୀର କାରୁଣ୍ୟର ଅପବାଦକୁ ତ କବି ମହାନନ୍ଦରେ ତାର ଶିରୋଭୂଷଣ କରି ନେଇଛି ।

କବି କିନ୍ତୁ ଦୁଃଖକୁ କେବଳ ଦେଖେନାହିଁ । ଯେତିକି ଦେଖାଯାଏ, ସେତିକି ଦେଖେନାହିଁ । ବରଫ ପାହାଡ଼ର ନବେଭାଗ ବୁଡ଼ି ଦଶଭାଗ ଉପରକୁ ଦୁନିଆଁ ଆଖିରେ ପଡ଼ିପାରେ । କବି ଦୃଷ୍ଟି କିନ୍ତୁ ସେ ନବେଭାଗ ସନ୍ଧାନୀ । ସେଇଥିପାଇଁ ତ କବି ଆଖିରେ ପାଷାଣ ସୌଧ ତାଜମହଲ ହୋଇଉଠେ କାଳର କପାଳ ତଳେ 'ଗୋଟିଏ ଏକ ଅଶ୍ରୁ ଝିଙ୍କମଲ କୋହ'ର କାଳାନ୍ତର ପ୍ରେମ । 'ଏକ ବିନ୍ଦୁ ଆଖି ଲୁହ, ଗୋଟିଏ ଏକ କୋହ'ର ଅନ୍ତରାଳରେ ଭୁବନବ୍ୟାପୀ ବେଦନା ଓ

ସନ୍ତାପ । ଯୁଗ ଯୁଗର ଛଟପଟ ଆକୁଳତାକୁ କବି ଗୋଟିଏ ଜନ୍ମରେ ହିଁ ଭୋଗିନିଏ । କବି ଭଗୀରଥ, ଯେଉଁ କଳ୍ପାନ୍ତ ପୂର୍ବର ଅଗଣିତ ବଂଶଧର, ଅଭିଶାପ-ବହ୍ନିରେ ଛଟପଟ ମାନବାତ୍ମାର ମର୍ମଦାହକୁ ନିଜ ଅନ୍ତରରେ ଭୋଗି ଥାଏ । ସେ ନିଆଁରେ ନିଜେ ଜଳିଥାଏ, ସେ ସନ୍ତାପରେ ନିଜେ ସଢ଼ିଥାଏ, ଏବଂ ଯନ୍ତ୍ରଣାର ପ୍ରକୃତିକୁ ଅନୁଭବରେ ବୁଝିଥାଏ ବୋଲି ଯନ୍ତ୍ରଣାହୀନତାର ଉପାୟ ସନ୍ଧାନ କରେ । କବି ଆତ୍ମ ସୁଖ ବିସର୍ଜନ ଦେଇ, ସହଜ ଜୀବନରେ ଜଳାଞ୍ଜଳି ଦେଇ ଦୁଃଖର ତପସ୍ୟା କରେ ସ୍ୱର୍ଗର ମନ୍ଦାକିନୀକୁ ଧରଣୀଧୂଳିର ରୂପ ଦେବାପାଇଁ । କବିର କାନ୍ଦିବାର ହୃଦୟ ନଥିଲେ, କୋମଳ ଦରଦ ନଥିଲେ, ସମ୍ବେଦନା ସହାନୁଭୂତି ନ ଥିଲେ ସେ ମାନବକୁ ସୁଖ ସନ୍ଧାନର ପ୍ରତିଶ୍ରୁତି ଦିଅନ୍ତା ନାହିଁ । ଅଶ୍ରୁର ଯମୁନା ତୀରରୁ ମଧୁର ପ୍ରେମର ମୋହନବଂଶୀ ବଜାନ୍ତା ନାହିଁ । ମରଣର ଅନ୍ତଃପୁରରୁ ଜୀବନର ଶଙ୍ଖନାଦ କରନ୍ତା ନାହିଁ ।

ସମସ୍ତେ ସୁଖଦୁଃଖ ଭୋଗନ୍ତି, ଅଙ୍ଗେ ନିଭି ବେଦନାର ଦରଦ ବୁଝନ୍ତି, ସମ୍ବେଦନା ସହାନୁଭୂତି ବି ଏକାକୀ କବିର ହୃଦୟଧନ ନୁହେଁ; ମାତ୍ର 'ସବ କ୍ଷତି ମିଥ୍ୟା କରି ଜୀବନେର ମହିମା ବିରାଜେ' (ରବୀନ୍ଦ୍ରନାଥ)—ଏକଥା କେବଳ କବିଟିଏ ସୁନ୍ଦରକରି କହିପାରେ ।

କବିର ଭାବପ୍ରବଣତା ତାର ଦୁର୍ବଳତା ନୁହେଁ, ସାମର୍ଥ୍ୟ । ତା'ର କୋମଳତା ହିଁ ତାର ଶକ୍ତି, ଦରଦ ବଜ୍ରାୟୁଧ । ଭବ-ଯନ୍ତ୍ରଣାର ନରକ ଭିତରେ ସେ ହିଁ କେବଳ ଭାବରାଜ୍ୟର ସ୍ୱର୍ଗ ମାଧୁରୀ ସୃଷ୍ଟି କରିପାରେ ।

କବିର ଆହୁରି ଅପବାଦ ଅଛି । ସେ ସ୍ୱପ୍ନଜୀବୀ । ସେ ବାସ୍ତବଠାରୁ, ପଳାୟନବାଦୀ । ସତକଥା, କବିର ଦେଖାଟି ଭିତରେ ବେଶି ଭାଗ ତ ଆସେ ସ୍ୱପ୍ନ । ରାତି ତ ରାତି । ଦିନରେ ବି ଜଳଜଳ ଆଖି ମେଲିକରି ହିରଣ୍ମାନଙ୍କରୁ ସ୍ୱପ୍ନ ସାଉଁଟିବାରେ ବିହ୍ୱଳ ରହିଯାଏ ।

କବି କିନ୍ତୁ ମାଟି ପୃଥିବୀର ସ୍ୱପ୍ନ ଦେଖେ ନାହିଁ । ମାଟି ପୃଥିବୀରେ ଉତ୍ତୁରି ପାରୁ ନ ଥିବା ଆକାଶକୁ ସ୍ୱପ୍ନ ଦେଖେ । ମାଟି ପୃଥିବୀରେ ଆକାଶକୁ ଉତ୍ତୁରାଇ ଦେବାର ସ୍ୱପ୍ନ ଦେଖେ ।

ପୃଥିବୀକୁ ଜୀବନରେ ସମୁଦାୟ ପ୍ରାପ୍ତି-ଭାଗ୍ୟ ରୂପେ ମାନ ନେଇପାରେ ନାହିଁ ବୋଲି ସେ ତାର ପ୍ରାପ୍ୟକୁ ଅପାର୍ଥିବତା ଭିତରେ ଖୋଜେ । କବିର ଆଶା ଅଭିଳାଷ ପାର୍ଥିବତାକୁ ଅତିକ୍ରମ କରିଯିବାର ଦୁଃସାହସିକ ବ୍ୟାକୁଳତାହିଁ ତାକୁ ଏତେ ଆକାଶ-ଉନ୍ମୁଖୀ କରିଦିଏ । କବି ଆକାଶ ଭିତରକୁ ପଳାୟନ କରେନାହିଁ । ମାଟି ପୃଥିବୀକୁ ଅସ୍ୱୀକାର କରେ ନାହିଁ । ବରଂ ପୃଥିବୀର ମାଟି ଜୀବନକୁ ପୂରାପୂରି ଚିହ୍ନିଥାଏ ବୋଲି ତ ତାର ଖଣ୍ଡିତକୁ ଆକାଶର ଅସୀମ ସମ୍ଭାବନାର ଆଶ୍ୱାସନା ଶୁଣାଇଯାଏ । କବି ପୃଥିବୀ ପାଖେ ଅଙ୍ଗୀକାର ବଦ୍ଧ, ତାର ଖଣ୍ଡତା, ସ୍ଥାନକାଳାବଦ୍ଧ ସୀମା ଦୈନ୍ୟ ସତ୍ତ୍ୱେ ପୃଥିବୀ ପାଇଁ ସେ ଏକ ଅନବରୁଦ୍ଧ ଅନନ୍ତ ସମ୍ଭାବନାକୁ ଯତ୍ପରେନାସ୍ତି ଅନୁସନ୍ଧାନ କରିବ । 'ପୃଥିବୀର ଜୀବନ' ଏତିକରେ ସୃଷ୍ଟିର ଭାଗ୍ୟ ଶେଷ ହୋଇଯାଏ ନାହିଁ । ତେଣୁ ସେତିକ କଥାରେ କବି ତୃପ୍ତ ହେବ କପରି ? ତାର କଥା ସରିବ କପରି ? ତେଣୁ ତ ତାର ସ୍ୱପ୍ନ ଅସରନ୍ତି । ସବୁ କର୍ଦ୍ଦମ ଭିତରେ ସେ ପଦ୍ମ-ସୌରଭ ପାଇଁ ଉଚ୍ଚାଟିତ । ଅନ୍ଧାରର ବାଦଲ ଝଞ୍ଜ୍ମଣ୍ଡଳ ଭିତରେ ସେ ଏକ ଜ୍ୟୋତିର୍ବଳୟର ସଂଧାନ ତତ୍ପର ।

କବିର ଆଲୋକ-ସ୍ୱପ୍ନ ଅବାସ୍ତବ ନୁହେଁ । ସେ ଆଲୋକ ସୁଦୂର ହେଲେ ବି କବି ହୃଦୟରେ ତାର ଉଷ୍ମତା ସଞ୍ଚାରିତ । କବିର ଚେତନାରେ ତାର ଦୀପ୍ତି ଉଦ୍ଭାସିତ । କବି ଆଖିରେ ସତ୍ୟାବରଣର ହିରଣ୍ମୟ କୋଷ ସମୁଦ୍ଘାଟିତ ।

ତେଣୁ କବି କେବଳ ଆକାଶକୁ ଖସି ପଳାଏ ନାହିଁ । ବରଂ ଅନ୍ଧାର ରାତି ପାଇଁ ଆକାଶରୁ ଆଲୋକ ସମ୍ବାଦ ମଧ୍ୟ ଆଣିଦିଏ । ତପ୍ତ ମରୁ ପାଇଁ ବର୍ଷନ୍ତ ମେଘର ଆଶ୍ୱାସନା ଭରିଦିଏ । କବି ନିଜେ ପ୍ରଭାକର, ନିଜେ ବର୍ଷୁକ ମେଘ ହୋଇଯାଏ । ସମୁଦ୍ରର ଲୁଣି ପାଣିରୁ ମଧୁର ଜଳକୁ ଗୁଣି ଆଣି ମେଘ ମରୁପୃଥିବୀକୁ ଶସ୍ୟ ସବୁଜିମା, ଫୁଲ ପ୍ରଫୁଲ୍ଲିମାରେ ଭରି ଦେବାଭଳି କବି ହାନ୍ତସନ୍ତ ଜୀବନ ଅନୁଭବରୁ ତଥାପି ଶୀତଳ ଆଶ୍ୱାସନାଟିଏ ଖୋଜି ଆଣେ । ମନର ମଧୁରତାରେ ଧରଣୀକୁ ସୁନ୍ଦର, ଜୀବନକୁ ମଧୁର ବୋଲି ଗୀତ ଶୁଣାଇଦିଏ । ଅହଂକାର ଓ ଭାବଦୈନ୍ୟର ମହାମନ୍ଥନ ଉପଜାତ ବିଷାଦର

କାଳକୂଟ-ଗ୍ରାସରୁ ପୃଥିବୀକୁ ସଞ୍ଜୀବିତ ରଖିବାକୁ ସେ ଆପଣାର ଜୀବନ-ପାତ୍ରଟିକୁ ମହାକାଳସ୍ତରରେ ମୃତ୍ୟୁଞ୍ଜୟ ପରୀକ୍ଷା ପାଇଁ ବଢ଼ାଇଦିଏ ।

କବିର ଶପଥ, ସତ୍ତାର ପାର୍ଥିବ ଅନୁଭବକୁ ନେଇ ସେ ପୃଥିବୀର ଭୂମି ଉପରେ, ପାର୍ଥିବ ଘଟଣାର ଘନଘଟା ଭିତରେ, ସତ୍ୟର ମୁହୁର୍ମୁହୁ ଆବିଷ୍କ୍ରିୟା ଭିତରେ କାନଭାସ ରଚନା କରିବ । ଗୋଟିଏ ଗୋଟିଏ ଶବ୍ଦ ଲେଖି ମହାମନ୍ତ୍ରକୁ ରୂପ ଦେବ । ଗୋଟିଏ ଗୋଟିଏ ସୁଖ ଦୁଃଖର ଅନୁଭବକୁ ବଖାଣି ସମଗ୍ର ଜୀବନକୁ ଆଭାସି ଦେବ ।

ପରମ ଅସ୍ତିତ୍ୱ କବି ପାଖେ ସାହାଯ୍ୟ ପ୍ରାର୍ଥୀ ଅନ୍ତ-ସତ୍ୟକୁ ଅନୁଭୂତି-ସିଦ୍ଧ କରି ସେ ଶାଶ୍ୱତକୁ ପ୍ରତିଷ୍ଠା କରିବ ।

ସେ କାଳି ତ୍ରିକାଳଜୀବୀ !

ତା ୨୪ । ୮ । ୮୫



# ଫୁଲ ଓ ଫୁଲ୍ଲ

ଫୁଲ ରସିଆତ ଫୁଲ ପାଖକୁ ଖୋଜି ଲୋଡ଼ିଯିବ । ତାହା ବଣର ଫୁଲ କି ବଗିଚାର ଫୁଲ, ମାଲ୍ୟାଣୀ ବାଡ଼ିର ଫୁଲ କି ବଜାରହାଟର ଫୁଲ ହୋଇପାରେ । ମାତ୍ର ଏକଥା ସତ ଯେ ଫୁଲ ରସିଆଟି ତାର ଫୁଲ-ପ୍ରେମକୁ ପ୍ରମାଣ କରିବା ପାଇଁ ଫୁଲକୋବି ଦୋକାନକୁ ଯିବନାହିଁ । ଫୁଲକୋବିର ହାଟରେ କେହି ଗୋଲାପ ଲୋଡ଼ି ବସିବ, ରସି ବସିବ, କି ବିକି ବସିବ, ସଜାଇ ବସିବ ସେ ହୁଏତ ଜାଣିପାଗଳ କିମ୍ବା ଫଟା ରସିକ ।

ଫୁଲର ଜାଗା ଅଲଗା । ସମସ୍ୟ ବି ନିଆରା । ବାହାବ୍ରତ, ଓଷାପୂଜା, ସବୁ ଅନୁଷ୍ଠାନ, ପ୍ରୀତି ସମ୍ବର୍ଦ୍ଧନା—ଫୁଲଟିଏ ନହେଲେ ନଚଳେ । ଫଳବିହୁନେ ନୈବେଦ୍ୟ ବଢ଼ାଯାଇପାରେ, ଫୁଲ ବିହୁନେ ପୂଜା ନାହିଁ । ଏକୁଡ଼ିଶାଳ ଷଠୀ ଘରଠାରୁ ମଶାଣିପଦା ଯାଏ ସବୁଠି ସେ ଫୁଲ ମଣିଷର ସାଥୀ । ସୁଖ ଦୁଃଖର ସହଚର । ଆଉ ଜନ୍ମଠାରୁ ମରଣର ବ୍ୟବଧାନ ପର୍ଯ୍ୟନ୍ତ ବଞ୍ଚିବାର ବ୍ୟାପାରରେ ସହଯୋଗ କରିଥିବା ଫୁଲକୋବିଟି ?

ଗୋଲାପ ଓ ଫୁଲକୋବି । ଉଭୟେ ତ ଫୁଲ । ମାତ୍ର ଦୁହିଁଙ୍କୁ ଏକାଠି କରି ତଥାପି ଦେଖିହୁଏ ନାହିଁ । ଫୁଲକୋବିର ଚାଷ ବହୁତ । ଗୋଲାପର ମାଳି ଜଣେ ଅଧେ । ହାଟ ବଜାରରେ ଫୁଲକୋବିର ପସରା ଅସୁମାରି । ଗୋଲାପ ପସରା କାଁ ଭାଁ । ଫୁଲକୋବିର ବିକାକିଣା ଗହଳ ଚହଳ ଭିଡ଼ ବଜାର ପାଖରେ ଗୋଲାପ ବଜାରରେ କେହି କେମିତି ହାତଗଣତି ଗରାଖ ।

ଫୁଲକୋବି ବଞ୍ଚିବା ପାଇଁ ଲୋଡ଼ା; ଗୋଲାପ ?

ଏ କଥା ସତ ଯେ ଖାଇବା ଥାଳି ପାଖରେ ଭୋକ ଆତୁର ଆଖି ଫୁଲଦାନିର ସଜ ଗୋଲାପର ରଙ୍ଗକୁ ନିରେଖିବ ନାହିଁ, ଫୁଲ କୋବିରେ ମଜିବ । ପେଟର ଭୋକ ମରିଯିବା ପରେ ? କୋବିଫୁଲରେ ଆଉ ଧ୍ୟାନ ରହିବ ? ମନ ତ ବଳିବ ଫୁଲଦାନିକୁ, ଉପବନକୁ, ଅରଣ୍ୟକୁ ।

ପେଟର ଭୋକ ମେଣ୍ଟାଉଥିବା ଫୁଲ କେବଳ ବଡ଼ାଥାଳରେ ସୁନ୍ଦର । ମନର ତୃପ୍ତି ଯୋଗାଉଥିବା ଫୁଲ କିନ୍ତୁ ଫୁଲଦାନରେ ସୁନ୍ଦର । ଅରଣ୍ୟରେ ସୁନ୍ଦର ।

ସେ ଫୁଲ ଅବଶ୍ୟ ସବୁବେଳର ନୁହେଁ । ସବୁ ପ୍ରୟୋଜନର ବି ନୁହେଁ । ଗୋଲାପକୁ ଦେଖିବାର ତୃପ୍ତିରେ ସବୁଦିନ ଉପାସିଆ ରହିଯିବାକୁ କେହି ଚାହିଁବ ନାହିଁ । ମୁହୂର୍ତ୍ତଟିଏ ପାଇଁ ସେ ଫୁଲର ଲୋଡ଼ା, ବାକି ସମୟତକ ଲୋଡ଼ା ଫୁଲକୋବିର ପ୍ରସ୍ତୁତି ପାଇଁ ।

ଏକଥା ନୁହେଁ ଯେ ଦୁନିଆରେ ରସର ଅଭାବ, ରସିକର ଅଭାବ ରହିଛି । ଏ ଦୁନିଆଁର ଭୋଗଭାଗ୍ୟତ ପ୍ରକୃତ ରସବନ୍ତର । ମାତ୍ର ରସକୁ ଆସ୍ୱାଦନ କରିବା ଭଳି ସରସ ପ୍ରାଣ ପାଇଁ ଫୁଲକୋବିଟିକୁ ଯେ ଅପେକ୍ଷା କରିବାକୁ ପଡ଼େ ତାହା ହିଁ ରସିକ ଜୀବନର ବିଡ଼ମ୍ବନା ।

ଜୀବନ ଦେହକୁ ବାଦ୍ ଦେଇପାରେନାହିଁ । ଦେହସର୍ବସ୍ୱ ବି ହୋଇପାରେ ନାହିଁ ।

ଶାରୀରିକ ବଞ୍ଚିବା କେତେ ବଡ଼ ବଞ୍ଚିବା ତାହା ଫୁଲକୋବି ପ୍ରମାଣ କରିଦିଏ । ହେଲେ ସେ ବଞ୍ଚିବା ଯଥେଷ୍ଟ ମନେହୁଏ ନାହିଁ । ବଞ୍ଚିବାର ସରସତା ଯେମିତି ଗୋଲାପ କଢ଼ଟିକୁ ଅପେକ୍ଷା କରିଥାଏ ।

ଗୋଟିଏ ବଞ୍ଚିବାର ସାମଗ୍ରୀ; ଅପରଟି ଜୀବନକୁ ସମଗ୍ରତାର ସୁରଭି ସ୍ପର୍ଶ ।

ରାତି ପାହିଲାବେଳକୁ ଅନ୍ନଜୀବୀ ଦେହୀର ଦରମୁଦା ଆଖି ଆଗରେ ଯେଉଁ ଛବି ଭାସିଆସେ ସେ ତ ବାଇଗଣ କଅଁରି, ଲଙ୍କାବାଡ଼ି, ମାଛହାଟ କି ଫୁଲକୋବିର କ୍ଷେତ । କିନ୍ତୁ ଆଖିଖୋଲି ଆକାଶର ମୁହଁ ଦେଖି ମାଟିକୁ ଆଖି ଫେରାଇ ନେବାବେଳେ ସଜଫୁଟା ଗୋଲାପର ମୃଦୁ ହସ ଟିକକ ହଠାତ୍ ଯେମିତି ସେ ଆଖିର ତାରାକୁ ତା ପାଖୁଡ଼ାରେ ଲଟକାଇ ଦିଏ, ଭାବନାକୁ ଚମକାଇ ଦିଏ ।

ଫୁଲ ଆଉ ସୂର୍ଯ ଦୁହେଁ ହଠାତ୍ ହସି ଉଠନ୍ତି କି ? ମୁହୂର୍ତ୍ତେ ଜୀବନ ଫୁଲ ହୋଇଯାଏ କି ? ସୂର୍ଯର ସୁନାରଙ୍ଗ ହୋଇଯାଏ କି ? ସମୟଟିଏ ଫୁଲ ହୋଇ ଫୁଟିବାର ଆବେଗ ପାଲଟିଯାଏ କି ?

ଏଇ ଭଳି ଏକ ସମୟର ଅପେକ୍ଷାରେ ଜୀବନ ରହିଥାଏ ବୋଲି ମନେ ବି ନ ଥାଏ । ଅଥଚ ଭିତରର କେତେ ବଡ଼ ପ୍ରୟୋଜନ ଯେପରି ଅକସ୍ମାତ୍ ଚରିତାର୍ଥ ହୋଇଯାଏ ।

ସବୁ ମୁହୂର୍ତ୍ତରେ ଜୀଇଁ ରହିବାର ଆୟୋଜନ ଯେ କରିବାକୁ ହୁଏ, କ'ଣ ମୁହୂର୍ତ୍ତେ ସେ ଜୀଇଁବାକୁ ଅନୁଭବ କରିବା ଲାଗି ? ଜୀବନର ଅର୍ଥ ବୁଝିବା ଲାଗି ?

ଫୁଲକୋବିର ଗଠନ ସୌଷ୍ଠବ ଗୋଲାପ ଭଳି ଚମତ୍କାର ନ ହେଲେ ବି ଅସୁନ୍ଦର ନୁହେଁ । ଲେଉଟାଣି ପରିପାଟୀମୟ ତାର ସେ ସାଜ-ଆୟୋଜନଠାରେ ସୌନ୍ଦର୍ଯ୍ୟବୋଧର କୌଣସି ସ୍ପଷ୍ଟ ଅବହେଳନ ନୁହେଁ । ଦର୍ଶନେନ୍ଦ୍ରିୟ ସହ ଘ୍ରାଣେନ୍ଦ୍ରିୟ ଓ ରସନେନ୍ଦ୍ରିୟ ପାଇଁ ବି ସେ ବେଶ୍ ଆକର୍ଷଣୀୟ । ବ୍ୟଞ୍ଜନର ତୃପ୍ତିରେ ତା'ର ଦ୍ରବ୍ୟମୂଲ୍ୟ । ଗୋଲାପର ଦ୍ରବ୍ୟମୂଲ୍ୟତା ବିଲକୁଲ ନାହିଁ । ଏଇଠି ଫୁଲକୋବିର ମୂଲ୍ୟକୁ ମାପି ହୁଏ, ବିନିମୂଲ୍ୟ କରାଯାଇପାରେ । ମାତ୍ର ଗୋଲାପର ଅମୂଲ୍ୟତାକୁ ବୁଝିହୁଏନା, ବୁଝିବା କଥା ଚିନ୍ତା କରାଯାଇ-ପାରେନା ।

ଗୋଲାପର ଅମୂଲ୍ୟତା ତାର ଖୁସି ଦେବାର ସାମର୍ଥ୍ୟରେ । ଗୋଲାପର ପାଖୁଡ଼ାରେ ପ୍ରକୃତିର ସବୁ ଆନନ୍ଦ ଯେପରି ଫୁଟିଉଠେ, ବ୍ୟକ୍ତିର ଅନ୍ତରର ମହକ ବି ପ୍ରସାରିଯାଏ ।

ମଣିଷର ଯତ୍ନ ଆଦର ସମୟ ଓ ଶ୍ରମ ଉଭୟଙ୍କ ପାଇଁ ଲୋଡ଼ା । ପୁଣି ପ୍ରକୃତିର ସାହାଯ୍ୟ—ମାଟି ଆକାଶ ଖରା ପାଣିର ଅନୁକୂଳ ପାଗ ବି ଲୋଡ଼ା । ତଥାପି ଦୁହେଁ ଭିନ୍ନଭାବେ ଲୋଡ଼ା ହୋଇଥାନ୍ତି । ଜଣେ ଦେହର ପୁଷ୍ଟି ସାଧକ, ଆଉ ଜଣେ ପ୍ରାଣର ପରିତୃପ୍ତିବିଧାୟକ । ଗୋଟିକରେ ଦେହ ନିଜକୁ ପାଏ, ଅପରଟିରେ ମନ ନିଜକୁ ଛୁଏଁ । ଫୁଲକୋବି ଭଳି ଜୀବନ ବଞ୍ଚାଇ ରଖିବାର

ସାମର୍ଥ୍ୟ ଗୋଲାପର ନାହିଁ, ମାତ୍ର ପ୍ରାଣର ଖୁସିକୁ ଯେ ଯେମିତି ଆପେ ଫୁଲ ହୋଇ ଭେଟି ଦିଏ । ଗୋଲାପର ପାଖୁଡ଼ା ଯେମିତି କୁହୁକ-ଦର୍ପଣଟିଏ । ଅନ୍ନଜୀବୀ, ଦେହବନ୍ଧ ଜୀବଟିକୁ ଯେ ମନୋମୟ ଆକାଶର ସପ୍ତପୁରରେ ଉଡ଼ାଇଦିଏ । ମଣିଷ ଯେ ଆକାଶକୁ ଖୋଜିପାରେ, ରଙ୍ଗରେ ପହଁରିପାରେ, ଗୋଲାପ ଯେମିତି ତାପାଇଁ ଇନ୍ଦ୍ରଧନୁର ବାଦଲ-ସେତୁ, ଦୂର ତାରକାର ସୁର-ସଙ୍କେତ ।

ମଣିଷ ଖାଲି ମଣିଷଟିଏ ନୁହେଁ, ସେ କବି, ସେ ଶିଳ୍ପୀ, ସେ ଗାୟକ, ଚିତ୍ରକର । ମୋଟ ଉପରେ ସେ ଜଣେ ରସିକ, ପ୍ରେମିକ । ପ୍ରେମ ତାର ସୌନ୍ଦର୍ଯ୍ୟକୁ, ସୌରଭକୁ, ସୃଷ୍ଟିକୁ, ଜୀବନକୁ । (ଫୁଲକୋବିର ଶ୍ରମିକଠାରୁ ଗୋଲାପର ପ୍ରେମିକ ହେବାରେ ତଫାତ୍ ଏଇଠାରେ) ଗୋଲାପ ଯେମିତି ବ୍ୟକ୍ତିର ପ୍ରେମ, ବ୍ୟକ୍ତିର ଅନ୍ତର୍ଗତ ରସୋଚ୍ଛଳ କାବ୍ୟଲହରୀ । ଯାହା ସେ ହୋଇପାରିନି, କହି ପାରିନି; ଅଥଚ ଯାହା ହୁଅନ୍ତା, ସେସବୁକୁ ଅତି ଚମତ୍କାର ଗୋଲାପଟିଏ କରି ଫୁଟାଇ ଦେଇଛି ।

କିଏ ବଡ଼, କିଏ ଶ୍ରେଷ୍ଠ ସେ ନିର୍ଣ୍ଣୟ ତ କରିଯାଇପାରେନା । ବଞ୍ଚିବାଠାରୁ ବଡ଼ କିଛି ନାହିଁ । ମାତ୍ର ସେ ବଞ୍ଚିବା କ'ଣ ପାଇଁ ? ପ୍ରାଣବାୟୁକୁ ନିଃଶ୍ୱାସ ପ୍ରଶ୍ୱାସରେ ଧରି ରଖିବା ପାଇଁ ଜୀବନର ସବୁ ପ୍ରାଣାନ୍ତକ ସାଧନା ସତ୍ତ୍ୱେ ତଥାପି ଜୀବନ ତୃପ୍ତ ହୁଏନା; ଆପଣା ବାହାରେ ଯେଉଁ ପରିତୃପ୍ତି ତାରି ଅନ୍ୱେଷଣ କରି ଚାଲିଥାଏ । ସେହି ଅନ୍ୱେଷଣର ଏକ ଉତ୍ତର ଯେମିତି ଗୋଲାପ । ପ୍ରକୃତିର ପ୍ରେମ, ସୃଷ୍ଟିର ପ୍ରେମ, ସ୍ରଷ୍ଟାର ପ୍ରେମର ପ୍ରତ୍ୟୁତ୍ତର-ରୂପ ।

ଗୋଲାପ ଯେମିତି ଏକ ମୁକ୍ତିର ବାର୍ତ୍ତା । ପ୍ରେମର ପ୍ରାଣଛୁଆଁ କବିତା । ଆପଣାଠାରୁ ଆପେ ମୁକୁଳି ପଡ଼ିବାର ଅନୁଭବ ତରଙ୍ଗଟିଏ ।

ମଣିଷ କ'ଣ ଆପଣାକୁ ନିଜ ପାଖେ ବନ୍ଦୀ ବୋଲି ଭାବୁଛି ? ଏ ଦେହ ତାର ବନ୍ଦୀଶାଳା ? ପରିପାର୍ଶ୍ୱର ଜଗତ ସୁଉଚ୍ଚ ପ୍ରାଚୀର ? ମନର ପକ୍ଷରେ ଉଡ଼ିବାର ହାଲ୍‌କା ମୁହୂର୍ତ୍ତମାନଙ୍କୁ ସେ ସେଇଥିପାଇଁ ଏତେ ମୂଲ୍ୟ ଦିଏ ?

ସୁନ୍ଦରକୁ ଚିହ୍ନିବାର, ବୁଝିବାର ସାମର୍ଥ୍ୟଟି ଯେ ନିଜ ଭିତରେ ରହିଛି, ସେ ଆବିଷ୍କାରର ଆନନ୍ଦ ତାପାଇଁ ବହୁ ମୂଲ୍ୟବାନ । ସେଇଥିପାଇଁ ଫୁଲ-

କୋବରେ ପେଟ ପୂରଯାଏ, ପ୍ରଣୟୀର ମୁହଁ କେବେ ଫୁଟି ଦଶେ ନାହିଁ । ଫୁଲକୋବ ବଜାରରେ ଜଣେ କେବଳ ଗୃହସ୍ଥ-ସନ୍ତ, ପରିବାରକୁ, ଆପଣାକୁ ସଂସ୍ଥାନ କରି ରଖିବାର ଦାୟିତ୍ୱସମ୍ପନ୍ନ ବ୍ୟକ୍ତିଟିଏ । ଆଉ ଗୋଲାପଟିଏ ହାତରେ ଧରିଥିବାବେଳେ ସେ ସବୁ ପରିଚୟର ବାହାରେ କେବଳ ଏକ ମୁଗ୍ଧ ପ୍ରେମିକ କବିଟିଏ ।

ଫୁଲକୋବି ପାଖୁଡ଼ାରେ ଯେଉଁ କର୍ମରତା ପତ୍ନୀର ରନ୍ଧନଶାଳାର କ୍ଲାନ୍ତ ମୁହଁ ଫୁଟିଥାଏ, ହୁଏତ ଗୋଲାପ କଢ଼ରେ ତାର ଲାବଣ୍ୟ ସ୍ନିଗ୍ଧ ସଜଫୁଟା ଓଠର ହସ ଉଙ୍କିମାରେ ।

ପ୍ରିୟଜନର ସାନ୍ନିଧ୍ୟ ସ୍ମୃତିକୁ ପ୍ରିୟତର କରି ଯେମିତି ଆବେଗ-ମଧୁର ମୁହୂର୍ତ୍ତଗୁଡ଼ିଏ ଛୁଇଁ ହୋଇଯାଏ । ଗୋଲାପ ସହିତ କେତେ ମଧୁର ଅନୁଭବ ଜଡ଼ିତ, କେତେ ବିହ୍ୱଳତାର ସ୍ୱର, କେତେ କବିତାର ଅନୁପ୍ରାସ ଗୁଞ୍ଜିତ, ତାହା ତ ମରମୀ-କବିର ଗଜଲର ଗୋଲାପରେ ସୁରଭିତ ।

ବସ୍ତାର ଗୋଲାପ, ଜୟପୁର ରାଜବାଟୀର ଗୋଲାପ, ହାଇଦ୍ରାବାଦ ପାର୍କର ଗୋଲାପ ବା ମୋଗଲ ଗାର୍ଡ଼ନର ବାଦସାହୀ ଗୋଲାପ, ଏସବୁ ତ ପ୍ରେମ ଆଉ ସୌନ୍ଦର୍ଯ୍ୟର ରୁବାଇଡ୍ ହୋଇ ପ୍ରସାରିତ ।

"Call it by any name—a rose is a rose is a rose is a rose !"

ରୋଜ୍ ରୋଜ୍ ବୋଲି ଏତେ ମହତ୍ତ୍ୱପୂର୍ଣ୍ଣ ନା କବିଟି ରୋଜ୍‌କୁ ରୋଜ ବୋଲି ଆବିଷ୍କାର କରିପାରିଥିବାରୁ ଏଇଭଳି ଆତ୍ମହବି ?

ରୋଜ୍ ରୋଜ୍, କାରଣ ସେ କବିର କବିତା, ଶିଳ୍ପୀର ରଙ୍ଗସଜ୍ଜା, ସୁରକାରର ସ୍ୱରଲହରି । ଗୋଲାପ ପ୍ରଣୟୀର ମୃଦୁ ସ୍ପର୍ଶ, ଓଠର ସ୍ନିଗ୍ଧ ମାଦକତା, ଆଖିର ମୁଗ୍ଧ ଗୃହାଣୀ । ଗୋଲାପ ଏକ ମଧୁର ଆବେଗ, ଏକ ବିପୁଳ ଉଚ୍ଛ୍ୱାସ, ଏକ ନୀରବ ଆବେଦନ । ଗୋଲାପ ଏକ ଶୀତଳ ସଞ୍ଚାରଣ, ଉଷ୍ମ ଶିହରଣ ଓ ଧୀର ବାର୍ତ୍ତାଳାପ ।

ଗୋଲାପ କଳ୍ପନାର ଉଡ଼ାପକ୍ଷ । ଆଉ ଫୁଲକୋବି ବାସ୍ତବତାର ଫସଲ କ୍ଷେତ । ସେଠି ବି ସୌନ୍ଦର୍ଯ୍ୟ, କ୍ଷେତର ସୌନ୍ଦର୍ଯ୍ୟ, ସବୁଜିମା ଓ ପ୍ରଫୁଲ୍ଲତାର ସମାବେଶ ଦେଖି ଆଖି ପୂରେ ଏବଂ ଆଉ ଏକ ପୂରଣର ପ୍ରତିଶ୍ରୁତି ମିଳେ ।

ଗୋଲାପ ପାଖେ ଏଭଳି କିଛି ପ୍ରତିଶ୍ରୁତି ନାହିଁ । ତଥାପି ଧରାରେ ଯେ ସ୍ୱର୍ଗ ରଚନାର ପରିକଳ୍ପନା କରାଯାଏ, ତାହା ଗୋଲାପ ପାଖୁଡ଼ାରେ ହିଁ ରଚିତ ହୋଇଥାଏ । ମଣିଷ ଯେ ପ୍ରାଣୀ ମାତ୍ର ନୁହଁ, ସେ ପ୍ରାଣଶକ୍ତିଟିଏ ବି; ସେ ସୁନ୍ଦରକୁ ଜାଣିପାରେ, ଖୁସି ହୋଇପାରେ । ସୃଷ୍ଟିର ସୁଷମାବିନ୍ୟାସକୁ ରୂପର ଅପରୂପ ଲୀଳାବିଳାସକୁ, ତାର ଅନ୍ତର୍ଗତ ଛନ୍ଦ ସ୍ପନ୍ଦନକୁ ନିଜ ହୃଦୟପୁରେ ସେ ଖେଳାଇପାରେ । ସେ ସଙ୍ଗୀତକୁ ମୂଲ୍ୟ ଦିଏ ଶ୍ରୋତା ହୋଇ, ସୁନ୍ଦରକୁ ମୂଲ୍ୟ ଦିଏ ଦ୍ରଷ୍ଟା ହୋଇ, ପ୍ରେମକୁ ମୂଲ୍ୟ ଦିଏ ଭଲପାଇ । ସୃଷ୍ଟିକୁ ମର୍ଯ୍ୟାଦା ଦେବା ତାପାଇଁ ଦୁଃସାଧ୍ୟ ହୋଇପାରେ, ଅସାଧ୍ୟ ନୁହେଁ । ସୃଷ୍ଟିରେ ବର୍ଷାର ରକ୍ତଭିଜା ବେଦନାକୁ ରଙ୍ଗ ପାଖୁଡ଼ାରେ ଉତ୍ତର ଦେବାର କବିତାଟି ତାପାଇଁ ଗୋଲାପ ।

ସୃଷ୍ଟି ତେଣୁ ମଣିଷର ପାଖେ ବ୍ୟର୍ଥ ନୁହେଁ । ଯିଏ ସୁନ୍ଦରକୁ ଚିହ୍ନିପାରେ, ସେ ଆପଣାକୁ ଓ ବିଶ୍ୱଭୁବନକୁ ବି ସୁନ୍ଦର ଦେଖିବ ଓ ସୁନ୍ଦର ରଖିବାକୁ ଚାହିଁବ; ତା ଭିତରେ ମଧ୍ୟ ସୁନ୍ଦର ଫୁଲଟିଏ ମୁକୁଳିବାକୁ ଅପେକ୍ଷା କରି ରହିବ ।

ଆତ୍ମାକୁ ଫୁଲ ସହ ଯେ ତୁଳନା କରାଯାଏ—ହସରେ ଫୁଲର ପ୍ରସନ୍ନତା ଦେଖାଯାଏ, ଫୁଲର ଗୁଞ୍ଜରେ ତନୁର ସୌଷ୍ଠବ ମପାଯାଏ । ଏ ସବୁର ବାହାରେ ଫୁଲର ସୌନ୍ଦର୍ଯ୍ୟ, ସୌରଭ, ଯେତେ ଇନ୍ଦ୍ରିୟଗ୍ରାହ୍ୟ ହୋଇଥିଲେ ବି ଫୁଲ ମାନେ ଏକ ଅତୀନ୍ଦ୍ରିୟତାର ବ୍ୟଞ୍ଜନା ଆଣେ । ତାହା ତାର ନିର୍ମଳ ଆହ୍ଲାଦିତା । ପବିତ୍ରତା, ମଧୁରତାର ପ୍ରତୀକ ରୂପେ ଫୁଲ-ଫୁଲ । ସେଠି ଆଉ ଫୁଲକୋବିକୁ ଫୁଲ ବୋଲି କୁହାହୁଏ ନାହିଁ । ଅନ୍ନମୟ-ବ୍ରହ୍ମର ପରିଭାଷାରେ ତାର ଫୁଲତ୍ୱର ମହିମା ସୀମାବଦ୍ଧ । ସୌନ୍ଦର୍ଯ୍ୟର ମାର୍ଗ, ସରସତାର ମାର୍ଗ, ପରିତୋଷର ମାର୍ଗ ଓ ପବିତ୍ରତାର ମାର୍ଗ ଦେଇ ଯେ ଆନନ୍ଦ-ରୂପ ଆବିର୍ଭୂତ ହୁଅନ୍ତି, ତାହା ଗୋଲାପଟିଏ, ଫୁଲ ଅର୍ଥରେ ଫୁଲଟିଏ ହିଁ ଉଦ୍‌ବୋଧିତ କରିଦିଏ ।



# ଚ୍ୟୁତ ପ୍ରତିମା

ଆଜି ଅତି ଯତ୍ନରେ ହସିମାଜି, ସଫା ସୁତୁରା ଚକ୍‌କଣ କରି କର୍ପୂର-ମାଳ· ଫୁଲଚନ୍ଦନରେ ସଜାଇ ଯେଉଁ ବ୍ୟକ୍ତିକୁ ମୂର୍ତ୍ତିଟିଏରେ ବାନ୍ଧିଦେଇ ସର୍ବ ସମକ୍ଷରେ ତାର ବହୁମୂଲ୍ୟତାକୁ ଉଚ୍ଚପୀଠରେ ସ୍ଥାପନା କରିଦେଲି, ତାର ଭବିଷ୍ୟତ କ'ଣ ହୋଇପାରେ ? ଏ କର୍ପୂରମାଳ, ଏ ନୈବେଦ୍ୟ, ଏ ସର୍ବ କଳରୋଳ, ହାତତାଳିରେ ସମ୍ବର୍ଦ୍ଧିତ ପ୍ରତିମାଟି ଯଦି କାଲି କାହାରି ନିଷ୍ଠୁର ହାତର ପୀଡ଼ନରେ ତଳେ ଫିଙ୍ଗା ହୋଇଯାଏ ? କାଦୁଅ, ଅସନା, ଧୂଳିମାଟିରେ ଅନାଦର ଓ କୁତ୍ସାର ନିକ୍ଷେପରେ ପୋତି ହୋଇ ପଡ଼ିଥିବା ସେ ଷ୍ଟାଚ୍ୟୁଟି ଭିତରୁ ଆଜିର ସମ୍ମାନାର୍ହ ବ୍ୟକ୍ତିଟି ଘୃଣା ଓ ହତାଦରର ଚରମତାରେ ମୁଣ୍ଡ ପୋତି ଦିଏ ?

ମୂର୍ତ୍ତିଟିକୁ ପୀଠାସନ କରିବାବେଳେ କେବେ ମନେପଡ଼େନି ନିଜ ମନୋମୀତ ଆଦର୍ଶ, ରୁଚି ଓ ବିଶ୍ବାସର ଅସମର୍ଥିତ କୌଣସି ପାର୍ଶ୍ବ ଯଦି କେବେ ସେ ବ୍ୟକ୍ତିଭିତରେ ଦେଖିବାକୁ ମିଳେ, ତେବେ ସଙ୍ଗେ ସଙ୍ଗେ ତାର ଯେ ଅଧୋପତନ ଘଟେ, ସେ ପତନ କାହାର ? ମୂଲ୍ୟ ତେବେ କିଏ ପାଇଥାଏ ? କାହାକୁ ଉପରେ ବସା ଯାଇଥାଏ ? ବ୍ୟକ୍ତିକୁ ନା ନିଜର ମୂଲ୍ୟବୋଧକୁ ? ଅପର ବ୍ୟକ୍ତିଭିତରେ ଆରୋପିତ ନିଜର ବିଶ୍ବାସଧାରାକୁ ?

କାଲି ସେ ମୂର୍ତ୍ତିଟିକୁ ତଳେ ଫିଙ୍ଗିଦେଲେ ଆଘାତ ଯେତେ ମୂର୍ତ୍ତିକୁ ବାଧିବ ନାହିଁ, ବାଧିବ ଯିଏ ଫିଙ୍ଗେ ତାକୁ । ମୂର୍ତ୍ତିଟିର କ୍ଷୟକ୍ଷତି କିଛି ଘଟିପାରେ, ହୁଏତ ଭାଙ୍ଗିଚୂରି ଯାଇପାରେ, ଆଉ ତା ସହିତ ଚୂରି ହୋଇଯାଏ ଯେତେ ଦୁର୍ବଳ ବିଶ୍ବାସ, କ୍ଷୀଣ ପ୍ରତ୍ୟୟ, ସୀମିତ ବିଶ୍ବାସ ।

ଶ୍ରଦ୍ଧାର ପୀଠ ଉପରେ ସମାସୀନ ପ୍ରତିମୂର୍ତ୍ତିଟିଏ ଏକ ଯୁଗୀୟ ଆଦର୍ଶ, ବିଶ୍ବାସ, ରୁଚି ଓ ମୂଲ୍ୟବୋଧର ପ୍ରତିଫଳନ ମାତ୍ର । ସେ ବିଶ୍ବାସ-ବଳୟର ବାହାରେ କୌଣସି ରୂପଚିହ୍ନ ସେଇ ବ୍ୟକ୍ତିଭିତରେ ଦୃଶ୍ୟମାନ ହେବାମାତ୍ରେ ସାମାଜିକ ଚୌପାଠୀରୁ ତାର ନିର୍ବାସନ ଘଟେ । ସମାଜ ତାର କୌଣସି ମୂଲ୍ୟବୋଧର ତତ୍‌କାଳୀନ ସ୍ବୀକୃତି ଲାଭ କରୁଥିବା ବ୍ୟକ୍ତିଭିକୁ ଆପଣାର

ପ୍ରତ୍ୟୁତ୍ତର ଦେବାକୁ ଚେଷ୍ଟାକରେ ବ୍ୟକ୍ତି-ପୂଜାରେ । ଏ ସ୍ୱୀକୃତି ଯଥାର୍ଥତଃ ବ୍ୟକ୍ତିକୁ ନୁହେଁ, ବ୍ୟକ୍ତିର ସାମାଜିକ ମହାମତିତ୍ୱରିତାକୁ ।

ପ୍ରତିମାଟିଏ ଯେତେବେଳେ ପୀଠ-ଆସୀନ ହୁଏ, ତାର ପ୍ରତିମାତ୍ୱ ପାଇଁ ନୁହେଁ, ପ୍ରତିଭା ପାଇଁ । ଅଥଚ ଚ୍ୟୁତି ଘଟେ ପ୍ରତିମାର । ପ୍ରଶଂସା କରାଯାଏ ଗୁଣର, ନିନ୍ଦା ହୁଏ ବ୍ୟକ୍ତିର । ପ୍ରଂଶସାର ବେଳାରେ ଗୁଣକୁ ଚିହ୍ନାଇ ଦିଆଯାଏ, ବ୍ୟକ୍ତି ସେଠି କିଛି ନୁହେଁ । ଆଉ ନିନ୍ଦାବେଳେ ତାର ବ୍ୟକ୍ତିତ୍ୱର ସାମଗ୍ରିକ ପରିଚୟ ବଦଳରେ ସେ କେବଳ ନିନ୍ଦାଯୋଗ୍ୟ ପରିଚୟଟିଏ ମାତ୍ର । ଏଠି ଗୋଟିଏ ନିର୍ଦ୍ଦିଷ୍ଟ ମାନର ସ୍ଥିରତା ଉପରେ ବିଚାର ଓ ବ୍ୟବହାର ଏକାନ୍ତ ରୁହନ୍ତି ନାହିଁ ।

ସମାଦର କାହାକୁ ? ବ୍ୟକ୍ତିର କୌଣସି ଗୁଣକୁ ? ପ୍ରତିଭାକୁ ? ବ୍ୟକ୍ତିତ୍ୱକୁ ନା ସ୍ୱୟଂ ବ୍ୟକ୍ତିକୁ ? ଯେ ପର୍ଯ୍ୟନ୍ତ ସମାଦରଟା ବ୍ୟକ୍ତି ବାହାରେ ତାର ବ୍ୟକ୍ତିତ୍ୱକୁ ଘେରି ଚଳପ୍ରଚଳ, ସେ ପର୍ଯ୍ୟନ୍ତ ତାର ସ୍ୱୀକୃତି ମଧ୍ୟ ଅନିଶ୍ଚିତ, ଅସ୍ଥିର । ପୃଥିବୀର ସବୁ ବିଚାର ବ୍ୟକ୍ତିତ୍ୱର; ବ୍ୟକ୍ତିର ହୋଇପାରେନା ।

ପ୍ରତିଭାକୁ ପ୍ରତିମା ସହ ମିଳାଇ ଦେଖିବାର ଭୁଲ୍‌ଟା ପ୍ରତିମାର ନୁହଁ । ବ୍ୟକ୍ତି ମାନେ ଅପୂର୍ଣ୍ଣ । ତାର ପ୍ରତିଭାରେ ଚମକୃତ ହେବାବେଳେ ଭୁଲି ହୋଇଯାଏ ଯେ, ଏହା ତାର ସମଗ୍ର ରୂପ ପରିଚୟ ନୁହେଁ । ମାତ୍ର ସେ ଚମକୃତ ମୁହୂର୍ତ୍ତର ଭେଳକବାଜି ପରେ ଆମେ କ'ଣ ତାକୁ ସାଧାରଣ ମଣିଷଟିଏ ଦେଖି ହତାଶ ହେଉ ବୋଲି ତାକୁ ସାଧାରଣ ମର୍ଯ୍ୟାଦାରୁ ବି ବିଚ୍ୟୁତ କରି ରଖିବା ପାଇଁ ନିନ୍ଦା-ସମାଲୋଚନାର ଶରଶଯ୍ୟାଟିଏ ପ୍ରସ୍ତୁତ କରିଦେଉ ?

ଚନ୍ଦ୍ରର ଜ୍ୟୋତ୍ସ୍ନାରେ ମୁଗ୍ଧ ହେବାବେଳେ ତାର କଳଙ୍କର ପାର୍ଶ୍ୱକୁ ମନେରଖିବା ନ ରଖି କଳଙ୍କ ଅଛି ବୋଲି ଚନ୍ଦ୍ରକୁ ଭଲପାଇ ହେବ ନାହିଁ ?

ପ୍ରତିମୂର୍ତ୍ତିଟି ଉପରକୁ ଉଠୁଥିବାବେଳେ ବ୍ୟକ୍ତିଟି ଉପରକୁ ଉଠିଯାଏ ନାହିଁ, ଉଠେ ଉଠାଉଥିବା ମନର ବିଶ୍ୱାସ, ଚିନ୍ତା, ଭାବନା । ତଳକୁ ଗଡ଼ାଇ ଦେବାରେ ମଧ୍ୟ ବ୍ୟକ୍ତିର ପତନ ଘଟେନା, ଘଟେ ଗଡ଼ାଇ ଦେଉଥିବା ମନର ଦୁର୍ବଳ, ଅସ୍ଥିର ସନ୍ଦିଗ୍ଧ ଚରିତ୍ର । ନିଜ ବିଚାର, ବିଶ୍ୱାସ ଓ ପ୍ରତ୍ୟୟର ପ୍ରଶାଂକକୁ

ଜଣେ ଯେତେ ଉପରକୁ ଉଠାଇନେବ, ସେତେ ଭୟଙ୍କର ଓ ପ୍ରବଳ ଭାବେ ସେ ଆଦର୍ଶର ତୁଙ୍ଗ ସ୍ୱର୍ଗରୁ ତାହା ଖସି ଭାଙ୍ଗିଯାଇପାରେ ଓ ସେ ଭାଙ୍ଗିବାର ଚମକ ସେତେ ପ୍ରଚଣ୍ଡ ଆଘାତ ଆଣିପାରେ ।

ଦୁନିଆଁରେ ସେଇମାନେ ହିଁ ବେଶି ହତାଶ ହୁଅନ୍ତି, ଯେଉଁମାନେ ତାଙ୍କର ମନୋମତ ପ୍ରିୟଜନଟିକୁ ଆଦର୍ଶ-ଉତ୍ତମ ଭାବି ଦେବତା ସହିତ ଏକାସନରେ ବସାଇ ଦଅନ୍ତି । ଦେବତା ଅପେକ୍ଷା ପ୍ରିୟଜନଟିର ସମସ୍ୟା ଏଠି ଗୁରୁତର । ଦେବତା ତ ଭଲମନ୍ଦ ବିଗ୍ରହର ଊର୍ଦ୍ଧ୍ୱରେ ଯେହେତୁ ଉଭୟଙ୍କୁ ସମ୍ଭାଳି ନେବା ଓ ଛନ୍ଦୋବଦ୍ଧ କରିଦେବା ତାଙ୍କର ଦୈବୀଶକ୍ତିର ବୈଶିଷ୍ଟ୍ୟ । ମାତ୍ର ପ୍ରିୟଜନ ବୋଲିଥିବା ମନୁ-ପୁତ୍ରଟି ଭଲ ବା ମନ୍ଦ କାହାକୁ ବି ଶେଷ ବୋଲି ଜାଣେ ନାହିଁ । ତାର ବିଦ୍ୟାବୁଦ୍ଧି, ଶକ୍ତି ସାମର୍ଥ୍ୟରେ ଭଲମନ୍ଦର ନିଆଁପାଣି ଖେଳ ଖେଳୁ ଖେଳୁ କେତେବେଳେ ତାର ରାନ୍ଧଣାଟା ସ୍ୱାଦିଷ୍ଟ ତ କେତେବେଳେ ପିତା କଷା ଲୁଣିଆ । ବେଳେ ବେଳେ ସେ ମଧ୍ୟ ପୋଡ଼ାଜଳା ଫୋଟକାର ଶୀକାର । ମଣିଷକୁ ଦେବତାର ଆସନରେ ବସାଇ ତାଠାରୁ ମାନବତ୍ୱର ପରୀକ୍ଷା ନେବାଠାରୁ ବଳି ଶାସ୍ତି ଓ ପରିହାସ ବୋଧହୁଏ ମଣିଷ ପାଇଁ ଅଧିକ କିଛି ନାହିଁ ।

ଅଥଚ ବିଗ୍ରହ ଆମେ ଯିଏ କରୁ, ବିଗ୍ରହର କେଉଁ ଶୁଦ୍ଧତା, ବୁଦ୍ଧିର କେଉଁ ଯୋଗ୍ୟତା ଆମର ଅଛି ବୋଲି ବଢ଼ାଇ କରିପାରିବୁ ? ଆମ ପାଖରେ ଏମିତି କିଛି କଷଟି ଅଛି, ଯାହା ଖାଣ୍ଟି ସୁବର୍ଣ୍ଣକୁ ଚିହ୍ନି ପାରିବୁ ?

ତାହେଲେ ଆମେ ଖାଣ୍ଟି ମଣିଷଟିଏ ହୋଇପାରି ନାହୁଁ କାହିଁକି ? ଆଉ ଏଭଳି ପରିପୂର୍ଣ୍ଣ ବିଗ୍ରହ କ'ଣ ଅଛି, ଯାହା ଅପରକୁ ଠିକ୍ ବୁଝିପାରେ ? ଦେଖିପାରେ ? ଏଠି ତ ସବୁ ଦେଖା ଅଧାଦେଖା, ଅଧା ଆଖିର ଦେଖା । କେଉଁ ଆଖିର ଦେଖାରେ କିଏ କେତେବେଳେ ଉପରେ ତ, ଆଉ ଆଖିରେ ସେତିକି ତଳେ । ଦେବତାର ରୂପଚିହ୍ନ ଏଠାରେ କେହି ଜାଣେ ନାହିଁ ବୋଲି ନିଜକୁ ଦେବତାର ପୁଷ୍ପାଞ୍ଜଳି ବାଢ଼େନାହିଁ । ମଣିଷଟିଏ ହେବା ଭିତରେ କେତେ ହୋଇପାରିଲି ଓ ନ ପାରିଲି, ସେତକ ବିଗ୍ରହ ତ ନିଜ ପାଖରେ ଠିକ୍ ରହିଥାଏ । ଆମେ ଏଠି କେହି ନିଜକୁ ଦେବତା ନୁହଁ ବୋଲି ଜାଣୁ ଏବଂ ନିଜର ମାନବୋଚିତ ଖର୍ବତା ପାଇଁ ସହଜରେ ନିଜକୁ କ୍ଷମାକରି ଦେଇଥାଉ ।

ନିଜ ଭିନ୍ନ ଅପରକୁ କିନ୍ତୁ ଦେବତା କରି ଦେଖିବାଟା ବଡ଼ ସହଜ କଥା ଓ ଆତ୍ମପ୍ରତାରଣାର ସହଜତମ ପନ୍ଥା । ଇନ୍ଦ୍ରତ୍ୱର ମୁକୁଟ ପିନ୍ଧାଇ ମଣିଷକୁ ଅମରାବତୀର ସିଂହାସନରେ ବସାଇଦେବା ଓ ସର୍ପରେ ଅଭିଶପ୍ତ କରି ସ୍ୱର୍ଗରୁ ଗଡ଼ାଇ ଦେବା ଆମ ହାତର କରାମତିର କଥା ।

କେବଳ ନିର୍ବୋଧମାନେଇ ଏଠି ଇନ୍ଦ୍ରପଦର ଲାଳସା କରନ୍ତି ଏବଂ ଅତି ବୁଦ୍ଧିମାନ୍ ଇନ୍ଦ୍ରତ୍ୱର ସାଧନା କରନ୍ତି । ମାତ୍ର ସାଧାରଣ ମଣିଷ ସେମାନଙ୍କୁ ଗୁରୁତ୍ୱ ଦେଉ ବା ନ ଦେଉ, ନିଜ ଭିତରେ ଜଣେ ବୋଲି ଗଣେ ନାହିଁ ।

କାହାରିକୁ ନିଜ ଭିତରେ ଗ୍ରହଣ କରିନେବାର ଅର୍ଥ ତାକୁ ବିଶ୍ୱର ବାହାରେ ବି ହୃଦୟର ସ୍ୱୀକୃତି ଦାନ ଦେବା । ତାର ଅପୂର୍ଣ୍ଣତାର ଦୁର୍ବଳତମ ବିନ୍ଦୁକୁ ଆବିଷ୍କାର କରିବା ପରେ ବି ଭଲ ପାଇବାରେ ଅତୁଟ ରହିବା ।

ସତ୍ତ୍ୱ ଅପୂର୍ଣ୍ଣ ବୋଲି ପ୍ରେମ କେବେ ମୁହଁ ବୁଲାଇ ଚାଲି ଯାଇଛି ? ଧୈର୍ଯ୍ୟହୀନ ହୋଇ ଫେରି ଯାଇଛି ?

ଜୀବନର କେଉଁ ଅକ୍ଷମତାକୁ ପ୍ରେମ ବୁଝିନାହିଁ ? ସମ୍ଭାଳି ନେଇନାହିଁ ? ପୂର୍ଣ୍ଣତା ଅଭିମୁଖେ ଘେନିଯିବାକୁ ଅନୁସରି ନାହିଁ ?

ପ୍ରେମ ଅନ୍ଧ ହୋଇପାରେ, ମାତ୍ର ତାହା ବିଶ୍ୱାସର ଅନ୍ଧତା । କିନ୍ତୁ ବିଗ୍ରହ ଏକଦେଶଦର୍ଶୀ । ସଂଶୟର ସାମାନ୍ୟ ଅନ୍ଧାରରେ ବି ବାଟ ହୁଡ଼ିଯାଏ ।

ବିଗ୍ରହ ପ୍ରତିମା ସ୍ଥାପନ କରେ, ଭାଙ୍ଗେ ବି; ମାତ୍ର ପ୍ରେମର ଅପ୍ରତିମ ଭାବଭୂମିରେ ହିଁ ମଣିଷର ଅକୃତ୍ରିମ ସରଳ ସମ୍ବର୍ଦ୍ଧନା ହୁଏ ।



# ରିକ୍‌ସାବାଲା

ବିଭିନ୍ନ ଅଞ୍ଚଳର ଲୋକ, ବିଶେଷ କରି ସ୍ତ୍ରୀ ଲୋକମାନଙ୍କୁ କଟକବାଟ ଚାଲିବାକୁ ପଡ଼ିବାପରେ ହଠାତ୍ ବାହାରିହୋଇଯାଏ କିଏ ଖୋଦ୍ କଟକ ସହରର ଅର୍ଥାତ୍ କଟକରେ ବଢ଼ି ଆସିଛି ! ପରିଚୟର ପ୍ରମାଣ ପଥ ମୁହଁରେ ଲୋଡ଼ିବାକୁ ହୁଏ ନାହିଁ, ହୁଏ ପାଦରେ । କେଇ ପାଦ ମାତ୍ର ଯାଇ ଶିଥିଳ ପାଦକୁ ଘୋଷାରି ଘୋଷାରି ଆଗପଛ ବା ଡାହାଣକୁ ଚାହିଁ କିଛି ଗୋଟେ ଯାନର ଆଶ୍ରୟ ଖୋଜୁଥିବା ବିକଳ ଦେହମାନେ ପ୍ରାପ୍ୟ କଟକବାସିନୀ ଆଉ ଖୋଜା ହେଉଥିବା ତୁଣ୍ଡ ଭିତରର ଅନୁଚ୍ଚରିତ ଶବ୍ଦଟି—ରିକସା ।

ଯାନ ସେଇ—ବାହନ ବି ସେଇ ।

କଟକ ସହର ଓ ରିକ୍‌ସା—ଏମାନଙ୍କ ସଂପର୍କକୁ ଅନୁଭବୀ ହିଁ ବୁଝେ । ଅନ୍ୟାନ୍ୟ ବହୁ ସହରରେ ବି ରିକ୍‌ସା ଅଛି । ଯାତାୟତର ପ୍ରଧାନ ବାହାନ ହୋଇପାରେ ବି । କିନ୍ତୁ କଟକ ସହରର ସେ ଯେମିତି ଅନ୍ତଃନାଡ଼ୀ । ଘର ଫାଟକ ଆଗରେ, ଗଳିମୁଣ୍ଡରେ କିମ୍ବା ଟିକିଏ ଆଗକୁ ଛକ ଉପରେ ରିକସାଟିଏ ଥୁଆହୋଇ ନ ଥିବା ଯେମିତି ନିପାତନସିଦ୍ଧ । (ସେମାନଙ୍କର ଷ୍ଟାଣ୍ଡ ଆଉ ନଥିବା ଭଳି, ଯେହେତୁ ଷ୍ଟାଣ୍ଡ ସେମାନଙ୍କର ସବୁଠି, ସ୍କୁଲ କଲେଜ, ଦୋକାନ ବଜାର, ରାସ୍ତାଘାଟ, ସିନେମା, ଅଫିସ, ଷ୍ଟେସନ, ବସଷ୍ଟାଣ୍ଡ, ଏମିତି ଲୋକ ବସତିର ଅଞ୍ଚଳ ନାହିଁ ଯାହାକୁ ରିକ୍‌ସାବାଲା ନିଜର ପିଣ୍ଡା ବୋଲି ନିଜ ରିକ୍‌ସାଟି ମାଧ୍ୟମରେ ଦାବୀ କରି ନ ପାରେ ।) କଟକବାସୀ ଦୁଇପାଦ ଚାଲିବାକୁ ଏମିତିକି ବାଦାମବାଡ଼ିରୁ ଦୋଳମୁଣ୍ଡେଇ, ରାଣୀହାଟରୁ କଲେଜଛକକୁ ଯିବା ପାଇଁ ରିକ୍‌ସାଟିଏ ଲୋଡ଼ାପଡ଼େ । କଟକ ସହରରେ ଚାଲିବାଟା ଯେମିତି ଏକ ଅଡ଼ୁଆ କଥା । ରିକ୍‌ସା ମିଳିଯାଏ ବୋଲି ନା ଏତେ ରିକ୍‌ସା ଯେ ଚାଲିବାକୁ ରାସ୍ତା ମିଳେନି ବୋଲି ?

କଟକ ସହର ରିକ୍‌ସାର ସହର । ରିକ୍‌ସା ତା ପ୍ରାଣର ନାଡ଼ୀ । ଟାଉନ୍‌ବସ୍, ଟାକ୍‌ସି, ଅଟୋ, ଟାଙ୍ଗା—ସହର ଜୀବନକୁ ଯାହା ଚଳିତ କରେ.

ସେ ସବୁର ସ୍ଥାନ କଟକରେ ଏକାକୀ ରିକ୍ସା ପୂର୍ଣ୍ଣ କରେ । (ସାଇକେଲ୍ କଥା ଅବଶ୍ୟ ସ୍ୱତନ୍ତ୍ର) ରିକ୍ସା ଚାଲୁଛି ମାନେ କଟକ ଚାଲୁଛି । ବଞ୍ଚୁଛି । କର୍ମତତ୍ପର ଅଛି । ସୁଖ ଦୁଃଖ, ଭଲ ମନ୍ଦର ଜୀବନପ୍ରବାହ ସହ ସାମିଲ ହୋଇଛି, ଅର୍ଥାତ୍ ସବୁ ସ୍ୱାଭାବିକ । କଟକ ସହର ରିକ୍ସାରେ ଚାଲେ ବୋଲି ତ ରିକ୍ସାବାଲାଙ୍କ ଧର୍ମଘଟ ଏଠି ସମ୍ବାଦ ଭଳି ସମ୍ବାଦ । ନେତାଙ୍କର ହାତବାରିସୀ, ନିର୍ବାଚନରେ ଭୋଟବ୍ୟାଙ୍କ । ଏ ରିକ୍ସାବାଲା କଟକ ସହରର କେଉଁ ଅଙ୍ଗକୁ ଚାହିଁଲେ ଆଘାତ କରି ନ ପାରନ୍ତି, ଅଚଳ କରି ନ ପାରନ୍ତି ?

କଟକ ସହର ଗଳିକନ୍ଦିର ସହର । ଲମ୍ବା ରାସ୍ତା, ଚଉଡ଼ା ରାସ୍ତା ସହ ପ୍ରତିଯୋଗିତାରେ ବହୁ ଉପରେ ତାଙ୍କର ନମ୍ବର । ସେ ଗଳିରେ ଗାଡ଼ିମଟର ପଶି ପାରିବ ନାହିଁ ! ଦୁ'ଟା ରିକ୍ସା ମୁହାଁମୁହିଁ ହୋଇଗଲେ କାହା ଘର ହାଣ୍ଡି ପଥର ଉପରକୁ ଚକଟାଏ ଟେକି ନ ଦେଲେ ବାଟ କଟାଇ ଆସି ପାରିବେ ନାହିଁ । ପୁଣି ଅନେକ ଗଳିକୁ ରିକ୍ସା ଛଡ଼ା ବେଳେ ବେଳେ ନିଜ ପାଦରେ ଚାଲିକରି ଯିବା ବି କଷ୍ଟକର ହୋଇପଡ଼େ । ପଙ୍କ ନର୍ଦ୍ଦମାର ଅସନା ପାଣି କାଦୁଅ ଉପରେ କିନ୍ତୁ ନିର୍ବିକାର ପଦ୍ମପତ୍ରପରି ରିକ୍ସା ଆଉ ତା ଉପରର ନିରାପଦ ଜୀବ ମଣିଷ ଯାତାୟତ କରିପାରନ୍ତି । ଅତଏବ ରିକ୍ସା ଏଠି ବିପଦକାଣ୍ଡାରୀ । 'ନାନ୍ୟ ପନ୍ଥା ବିଦ୍ୟତେ ଅୟନାୟ' । ବାଉନ ବଜାର ତେପନ ଗଳିର କଟକ ସହର ହିନେ ଯେମିତି 'ରିକ୍ସାର ସହର' ହେବାର ମାଷ୍ଟର ପ୍ଲାନ୍‌ରେ ଗଢ଼ା ହୋଇଥିଲା ।

କଟକ ସହରର ରିକ୍ସା କେବଳ ଯାତ୍ରୀବାହକ ନୁହେଁ, ପଥପ୍ରଦର୍ଶକ ମଧ୍ୟ । ଟୁରିଷ୍ଟ ଗାଇଡ୍ ଭଳି ଯାତ୍ରୀକୁ ଗନ୍ତବ୍ୟରେ ପହଞ୍ଚାଇ ଦେବାର ଦାୟିତ୍ୱ ଥରେ ହାତକୁ ନେଇଗଲେ ତେଣିକି ଗଳିକନ୍ଦିର ସର୍ଟକଟ୍ ମୋଡ଼ିବା ତା କାମ । ଯାତ୍ରୀ ଜାଣୁ ନ ଜାଣୁ, ରାସ୍ତା ଜାଣି ନ ଥିବା ରିକ୍ସାବାଲା ଗୋଟେ ଅଧେ ଥିବେ ।

କଟକ ସହରରେ ଟ୍ରାଫିକ୍‌ର ମଧ୍ୟ ଏକ ସ୍ୱତନ୍ତ୍ର ନିୟମ ଅଛି । ତାହା ରିକ୍ସାବାଲାଙ୍କ ନିୟମ । ରିକ୍ସା ଏ ସହରର ଯାନ ଚଳାଚଳ ନିୟନ୍ତ୍ରଣ କରେ, ଏ ଅଭିଯୋଗର ସତ୍ୟତା କଟକ-ରାସ୍ତାର ଯାତ୍ରୀ ମାତ୍ରେ ଜାଣେ । କଟକ

ସହରରେ ହଠାତ୍ ଆସି ପହଞ୍ଚିଥିବା ଗାଉଁଲି ଲୋକଟିର କଥା ଥାଉ, ଦିଲ୍ଲୀ, ବମ୍ବେ, କଲିକତା, ମାଡ୍ରାଜ ପରି ବଡ଼ ସହରବାଲା ବି କଟକ ରିକ୍ସାବାଲାଙ୍କ ନିୟମକୁ ଡରିଯାନ୍ତି । ଏ ସହରରେ ଗାଡ଼ି ଚଲାଇବାର ଲାଇସେନ୍ସ ଲୋଡ଼ା ହେଉ ବା ନ ହେଉ, ରିକ୍ସା ଭିଡ଼ରେ ଗାଡ଼ି ଚଲାଇବାର ଦକ୍ଷତା ସ୍ୱତନ୍ତ୍ର ଦକ୍ଷତା ତଥା ପରମ ଦକ୍ଷତାର ପ୍ରମାଣ । ରିକ୍ସା ସହ ପ୍ରତିଯୋଗିତାରେ ଏଠି ଗାଡ଼ି ବା ସ୍କୁଟର କେହି ଜିତି ପାରନ୍ତି ନାହିଁ । ସବୁ ଯାନର ଗତି ନିୟନ୍ତ୍ରକ ରିକ୍ସା ବରଂ ଅଧିକ ଗତିରେ ଯାଇପାରେ । ଗାଡ଼ିମଟର ରିକ୍ସାବାଲାର ମର୍ଜିରେ କେବଳ ଆଗକୁ ଯାଇପାରେ । ସାମ୍ନାରେ ଯାଉଥିବା କିମ୍ବା ସାମ୍ନାରୁ ଆସୁଥିବା ରିକ୍ସାର ଅଲିଖିତ ଅନୁମତି ଓ ସହଯୋଗ ବିନା ଗାଡ଼ିଗୁଡ଼ିକ ହର୍ଣ୍ଣଟି ମନଇଚ୍ଛା ବଜାଇବା ଛଡ଼ା ଆଉ ବେଶି କିଛି କରିପାରିବ ନାହିଁ ।

କଟକ ସହରର ସବୁ ଘଟଣାରେ ରିକ୍ସା ଅଂଶୀଦାର । ଏମିତି ଉତ୍ସବ ନାହିଁ, ଯାହା ସହ ରିକ୍ସାର ଯୋଗାଯୋଗ ନାହିଁ । ଦଶହରା, କାଳିପୂଜା, ବାଲିଯାତ୍ରା, ରାମଲୀଳାରେ, ମେଢ଼ଦେଖା ବଜାର ବୁଲାରେ କଟକବାସୀ ଆଉ ରିକ୍ସାର ଘନିଷ୍ଠ ବୁଝାମଣା । ସାଂସ୍କୃତିକ ସଭାସମିତି, ରାଜନୈତିକ ସଭା, ଶୋଭାଯାତ୍ରା, ଧର୍ମୀୟ ଉତ୍ସବ ବା ସାମାଜିକ ଅନୁଷ୍ଠାନ, ସବୁଥିରେ କଟକର ଜୀବନ ସହ ସେ ଅଙ୍ଗାଗୀ ଜଡ଼ିତ । ରିକ୍ସାରେ ଡାକ୍ତରଖାନାକୁ ପ୍ରସୂତି ଆସେ । ନବଜାତ ଶିଶୁ ଘରକୁ ଯାଏ । ବିବାହ, ବ୍ରତ, ଭୋଜଭାତରେ ରିକ୍ସା ଯୋଗାଯୋଗ ରକ୍ଷା କରିବାରେ ଏକ ବଡ଼ ସାମାଜିକ ଦାୟିତ୍ୱ ନିର୍ବାହ କରିଥାଏ । ସାଇକୁଲ, ବଜାରକରା, ସିନେମା, ସର୍କସ ଦେଖା, ହସଖୁସି ମଉଜର ମୁହୂର୍ତ୍ତଗୁଡ଼ିକରେ ରିକ୍ସାର ମଧ୍ୟ ଅଂଶ ଥାଏ । 'ହୋରି'ରେ ରାସ୍ତାରେ ଉତ୍ସାହୀ ଚପଳ କିଶୋରମାନଙ୍କ ଅତର୍କିତ ରଙ୍ଗ ପିଚକାରୀକୁ ବାଟରେ ଗ୍ରହଣ କରି ଯାଉଥିବା ରିକ୍ସାବାଲାର ହସ ହସ ସ୍ୱୀକୃତି ମିଳିଥାଏ । ରିକ୍ସାରେ ଯୁଗଳ-ପ୍ରେମୀ ଏକାଠି କେତୋଟି ନିରୋଳ ଏକାନ୍ତ ମୁହୂର୍ତ୍ତ କଟାଇବାର ସୁଯୋଗ ଲାଭ କରନ୍ତି । କଟକବାସୀଙ୍କ ସୁଖ ଦୁଃଖର ସମଭାଗୀ ରିକ୍ସା—'ରାଜଦ୍ୱାରେ ଶ୍ମଶାନେ ଚ' ତାର ସାହଚର୍ଯ୍ୟ ମିଳେ ।

ରିକ୍ସାବାଲାଙ୍କ ଭିତରେ ଡିଗ୍ରୀଧାରୀ ଶିକ୍ଷିତ ହୁଏତ ସ୍ୱଳ୍ପ, ମାତ୍ର ଆଉ ଏକ ବିଚାରରେ ବୋଧହୁଏ ସବୁ ରିକ୍ସାବାଲା ଶିକ୍ଷିତ । ମାର୍କ୍ସଙ୍କ 'ଦାସ

କ୍ୟାପିଟାଲ୍‌'କୁ ଗୋଡ଼ମାଟି ପଙ୍କ କାଦୁଅରୁ ପଢ଼ି ଶିଖିଛନ୍ତି । ରିକ୍ସାବାଲାଟିଏ ହାଣ୍ଡେଲ ଉପରେ ହାତ ଥୋଇବା ମାତ୍ରେ ନିଜକୁ ଶୋଷିତ, ଆଉ ସବାରି ମାତ୍ରେ ବୁର୍ଜୋୟା । ରିକ୍ସବାଲାର ଶ୍ରମକୁ ସେ ସାମାନ୍ୟ ଅର୍ଥ ବିନିମୟରେ କିଣୁଛି । କେବଳ ଅର୍ଥନୀତି ନୁହେଁ; ସମାଜନୀତି, ରାଜନୀତି ଓ ମନସ୍ତତ୍ତ୍ୱ ବୁଝିବା ପାଇଁ ମଧ୍ୟ ରିକ୍ସାବାଲା ଭଲ ବହି ବିରଳ ।

ଋତୁମାନଙ୍କୁ କଟକବାସୀଙ୍କୁ ରିକ୍ସାବାଲା ଚିହ୍ନାଇ ଦିଅନ୍ତି । କଟକରେ ତ ଶରତ ଆସେ ନାହିଁ କି ବସନ୍ତ ଆସେ ନାହିଁ । କାଶତଣ୍ଡୀ, କଇଁଫୁଲ, ପଳାଶ, କୋଇଲି ଆଖିରେ କାନରେ ପଡ଼ନ୍ତି ନାହିଁ । ଏଠି କେବଳ ରିକ୍ସାବାଲାଙ୍କ ସହ ଦାଉ ସାଧୁଥିବା ଖରାଦିନର ସୂର୍ଯ୍ୟ, ବର୍ଷାଦିନର ମେଘ ଓ ଶୀତଳ ଦିନର ହେମାଳ ପବନକୁ ଯାହା ଚିହ୍ନି ହୁଏ । ଜ୍ୟେଷ୍ଠମାସ ଦିନ ଦୁଇଟାବେଳର ଝାଞ୍ଜିରେ, ପ୍ରବଳ ଝଡ଼ବର୍ଷା ପବନର ଶ୍ରାବଣ-ସଞ୍ଜରେ କି କଲଜାଥରା କନକନିଆ ପୁଷ-ଶୀତର ଅଧରାତିରେ ଅତି ପ୍ରୟୋଜନ-ବାଧ୍ୟ ନିରୁପାୟ ଯାତ୍ରୀଟିଏ ରାସ୍ତାକୁ ବାହାରି ପଡ଼ିଥିବାବେଳେ ବିପଦକାଣ୍ଡାରୀ ଦେବଦୂତ ରୂପେ ରିକ୍ସାଟି ଯେମିତି ପ୍ରକୃତି ଓ ଯାତ୍ରୀଟି ଭିତରେ ଗୋଟିଏ ଅଭୟାଞ୍ଚଳ (ବଫର୍) ହୋଇ ଦେଖାଦିଏ ।

'ଏ ରିକ୍ସା' ଡାକଦେଲେ ଯେ ଆସି ପହଞ୍ଚିଯାଏ, ମଣିଷର ସଙ୍କଟଧାରୀ ତାର ନାମ ପରିଚୟ କ'ଣ ହୋଇପାରେ ? ଭାରତବର୍ଷର ଗୁଣକର୍ମଜାତ ଜାତିବିଭାଗର ତାଲିକାରେ ଏ ଆଉ ଏକ ନୂଆଜାତି 'ରିକ୍ସାବାଲା' । ଆଞ୍ଚଳିକ ସଂହତି ଓ ସର୍ବଧର୍ମ ସମନ୍ୱୟର ପ୍ରତୀକ । ଯେକୌଣସି ରାଜ୍ୟର ଅଧିବାସୀ ଆଉ ଯେ କୌଣସି ଧର୍ମ ମତରେ ବିଶ୍ୱାସୀ ହୋଇଥାଉ ପଛେ, ଗୋଟିଏ ସର୍ବନାମକୁ ସେ ସ୍ୱନାମ ବୋଲି ଆଦରି ନେଇଛି ଯେ, 'ରିକ୍ସାବାଲା' ।

ରିକ୍ସାବାଲାର ପ୍ରତିଟି ଯାତ୍ରୀ ସହ ଆଉ ଏକ ଆନ୍ତରିକ, ଘନିଷ୍ଠ ପରିଚୟ ଅଛି । ରିକ୍ସାରେ ବସିବା ପରେ ସେଇଟି ଦେଖିହୁଏ, ବୁଝିହୁଏ । ଗନ୍ତବ୍ୟସ୍ଥଳରେ ପହଞ୍ଚି ଓହ୍ଲାଇଯିବା ପର୍ଯ୍ୟନ୍ତ ରିକ୍ସାବାଲା ସହ ଯେପରି ଏକ ହୃଦୟର ସମ୍ପର୍କ, ନୀରବ ବୁଝାମଣାର ସମ୍ପର୍କ, କେତୋଟି ଏକାଠି ବାଣ୍ଟି ନେବାର ସମ୍ପର୍କ ସୃଷ୍ଟି ହୋଇଯାଏ । ପଥର ଦାମ୍ ପଥିକ ଚୁକାଇଦିଏ, କିନ୍ତୁ ସେ ମୁହୂର୍ତ୍ତଗୁଡ଼ିକ ବିନିମୟର ହିସାବ ବାହାରେ ପୃଥିବୀର ଆଉ ଅନେକ ଅମୂଲ୍ୟତା ସହ ଯେମିତି ମିଶିଯାଏ ।

ରିକ୍ସାରେ ଥରେ ବସିଯିବା ପରେ ଏ ପରିପାର୍ଶ୍ୱର ପୃଥିବୀକୁ ମୁଁ ଯେମିତି ଭୁଲିଯାଏ । ରାସ୍ତାଘାଟ, ଲୋକବାକ, ବଜାର ଗହଳି, ଚିହ୍ନା ପରିଚିତ କିଛି ଆଖିରେ ପଡ଼ନ୍ତି ନାହିଁ । କେବଳ ଆକାଶକୁ ଘୂଞ୍ଚି ଘୂଞ୍ଚି ଯାଉଥିବା ନୀଳ, ଆଗରେ ମେଲି ମେଲି ଯାଉଥିବା ଦିଗ୍‌ବଳୟ, ରାସ୍ତାକଡ଼ର ସଂଖୁଳି ଗୁଳିଥିବା ଗଛପତ୍ର, ମଝିରେ ମଝିରେ କଣୋଣିମାନଙ୍କ ଭଳି ଦରହସା ଫୁଲପେନ୍ଥା— କେବଳ ରାସ୍ତା ଆଉ ରାସ୍ତା ଏବଂ ଆକାଶ-ପୃଥିବୀର ଏକ ଚମତ୍କାର ସଂଯୋଗସ୍ଥଳ ମୋର ହୃଦୟ ।

କେତେ ନିଶ୍ଚିନ୍ତରେ ମୁଁ ବଢ଼ାଇଦିଏ କେତୋଟି ମୁହୂର୍ତ୍ତ ସେ ରିକ୍ସା-ବାଲାକୁ ଏବଂ ତା ସଙ୍ଗେ ସେଇ ମୁହୂର୍ତ୍ତଗୁଡ଼ିକର ସମସ୍ୟା, ଚିନ୍ତା, ଜଞ୍ଜାଳ ।

ଅତି ବିଶ୍ୱସ୍ତ ଭାବେ, ଯେପରିକି ଅନୁଗୃହୀତ ଭାବେ, ସେ ମତେ ଯଥାସାଧ୍ୟ ଯତ୍ନର ସହିତ ଗନ୍ତବ୍ୟକୁ ନେଇ ଯାଉଥାଏ । ଯେମିତି କେତୋଟି ମୁହୂର୍ତ୍ତ ପାଇଁ ସେ ମୋର ଅତି ବିଶ୍ୱାସୀ ଅଙ୍ଗରକ୍ଷୀ, ପ୍ରିୟଜନ, ଆତ୍ମୀୟ । ଦୁର୍ଗମ ରାସ୍ତାରେ ଅତି ସାବଧାନରେ ମୋର ଅସୁବିଧା ପ୍ରତି ଲକ୍ଷ୍ୟରଖି ଧୀର ଭାବରେ ଗାଡ଼ି ଚଳାଇ ନେଉଥିବ, ସମ୍ମୁଖରୁ ଆସୁଥିବା ଦ୍ରୁତ ଯାନଠାରୁ ନିରାପଦ ଦୂରତ୍ୱରେ ସତର୍କତାର ସହ ବାଟ କାଟାଇ ନେଉଥିବା ସବାରିର ସବୁଯାକ ଦାୟିତ୍ୱ ଯେମିତି ସବୁଯାକ ତାର । କେବଳ ଅର୍ଥ ଉପାର୍ଜନ ମଧ୍ୟରେ ଏ ଶ୍ରମ ? ସେତିକି ସମୟ ଓ ଶ୍ରମର ଧାର୍ଯ୍ୟ-ମୂଲ୍ୟ କ'ଣ ସେ କଳିଛି ନା ମୁଁ ? ମଣିଷର ମେହେନତିର ପ୍ରକୃତ ମୂଲ୍ୟ ସତରେ କ'ଣ ଅଛି ଏ ପୃଥିବୀରେ ?



# ଅଜାତଶତ୍ରୁ

କେଡ଼େ ମନଲୋଭା, ଚମତ୍କାର । ଈର୍ଷା କଲାଭଳି ଶବ୍ଦଟିଏ ।

ଆଉ ସେଇ ଟିକେ ଲୋଭ, ଟିକେ ଚମତ୍କାରତା, ଟିକେ ଈର୍ଷାରେ ହିଁ ସେ ଶବ୍ଦର ସବୁ ସାର୍ଥକତା ବ୍ୟର୍ଥ ହୋଇଯାଏ ।

ଶତ୍ରୁତାର ଉଦ୍‌ବୋଧନ ତ ଏଇ ଲୋଭାକୁଳ ଈର୍ଷା ।

ଅଜାତଶତ୍ରୁ ହୋଇ ପୃଥିବୀରେ ଜନ୍ମ ନେବାର ସୌଭାଗ୍ୟ ସତରେ କାହାର ଅଛି ?

ସ୍ୱୟଂ ଈଶ୍ୱରଙ୍କର ବି ?

ଈଶ୍ୱରଙ୍କୁ ମଧ୍ୟ ଏଠାରେ ଶତ୍ରୁପାଇଁ, ଶତ୍ରୁ ବିନାଶ ପାଇଁ ଜନ୍ମ ହେବାକୁ ପଡ଼େ । କାହାରି ଜାତ—ଶତ୍ରୁ ହୋଇ ଜନ୍ମ ହେବାକୁ ପଡ଼େ ।

ଶତ୍ରୁ ଜାତ ହୋଇ ନାହିଁ, ସେ ହୁଏତ ନିର୍ଗୁଣ ନିରପେକ୍ଷ ଅଜନ୍ମାବ୍ରହ୍ମ କିମ୍ବା ହୀନତମ, କ୍ଷୀଣତମ, ଦୁର୍ବଳତମ ସେ ଜନ୍ତୁ—ଶତ୍ରୁତା କରିବା ଭଳି, ଈର୍ଷା କରିବା ଭଳି, ଲୋଭ କରିବା ଭଳି ସମ୍ପଦ ଯାହାର ଭିତରେ ବାହାରେ କିଛି ନ ଥିବ ।

ଅଜାତଶତ୍ରୁ ହେବା ପୃଥିବୀର ଭାଗ୍ୟ ନା ନିଷ୍ଫଳତାର ଦୁର୍ଭାଗ୍ୟ ? ସ୍ୱୟଂ ପୃଥିବୀ ତ ସୂର୍ଯ୍ୟଗାତ୍ରରୁ ବିଚ୍ଛିନ୍ନ ହେବା ମୁହୂର୍ତ୍ତରୁ ପ୍ରତିପକ୍ଷ, ପ୍ରତିକୂଳ ପ୍ରକୃତି ସହ ଯୁଝି ଚାଲିଛି । ସବୁ ପ୍ରତିକୂଳତା ଭିତରେ ଜୀବନ ପାଇଁ ଅନୁକୂଳ ସ୍ଥିତି ଟିକେ ସାବ୍ୟସ୍ତ କରିବାକୁ, ଘୂର୍ଣ୍ଣାୟମାନ ଗତିଶୀଳତା ଭିତରେ ସ୍ଥିରତାର ମୁହୂର୍ତ୍ତ ଟିକେ ସଜାଡ଼ି ରଖିବାକୁ, ନିଶ୍ଚେତନାର ଅନ୍ଧାର ଭିତରେ ଆଲୋକର ଶିଖାଟିଏ ଜଳାଇ ରଖିବାକୁ ତା'ର ଯେ ଆପ୍ରାଣ ସାଧନା—ତାହା ହିଁ ତ ତାର ଭାଗ୍ୟ, —ସଂଗ୍ରାମର ଭାଗ୍ୟ, ଶତ୍ରୁତାର ଭାଗ୍ୟ ।

ପୃଥିବୀର ପ୍ରାଣୀମାନେ ଶତ୍ରୁତାର ନିୟମାଧୀନ । ମାତୃଗର୍ଭରେ ଜୀବନର ପ୍ରଥମ ସ୍ପନ୍ଦନ ସୃଷ୍ଟି ହେବାବେଳୁ ସତ୍ତାର ଜୀବନ-ବିରୋଧୀ ଅସଂଖ୍ୟ ଶତ୍ରୁ-ଶକ୍ତି ସହ ଯେ ସଂଗ୍ରାମ ଆରମ୍ଭ ହୋଇଯାଏ, ହୁଏତ ମୃତ୍ୟୁରେ ବି ତା'ର ଶେଷ ହୁଏ ନାହିଁ । ଉତ୍ତର ପୁରୁଷଙ୍କୁ ମଧ୍ୟ ରକ୍ତଧାରାର ସଞ୍ଚାଳନ ଓ ପ୍ରତିଷ୍ଠା ଭିତରେ ମହାକାଳର ପ୍ରତିପକ୍ଷରେ ଜୀବନର ଅମରତ୍ୱ ଆକାଂକ୍ଷା ଜାହାରର ସଂଗ୍ରାମ ଚାଲି ରହିଥାଏ ।

ପ୍ରତିପକ୍ଷ, ସଂଗ୍ରାମ, ଯନ୍ତ୍ରଣା—ଇଏତ ସୃଷ୍ଟିର ବିକାଶ ମନ୍ତ୍ର ।

'ସ ତପସ୍ତପ୍ତ୍ୱା ଇଦଂ ସର୍ବମସୃଜତ'—ସେ ତପସ୍ୟା କରି ଏହି ସବୁ ସୃଷ୍ଟି କଲେ—ସଂକଳ୍ପ ସାଧନା ଓ ଶ୍ରମସହ ପ୍ରତିକୂଳତାକୁ ଅତିକ୍ରମ କରିବାର ଦୃଢ଼ତା ମଧ୍ୟ ଏଥିରେ ସୂଚିତ ।

ଯୁଗେ ଯୁଗେ ବିଧାତାଙ୍କର ସେ ତପସ୍ୟାକୁ ବିଘ୍ନ କରିବା ପାଇଁ, ସୃଷ୍ଟି କ୍ରିୟାକୁ ବ୍ୟାହତ କରିବାପାଇଁ ବୃତ୍ରର ଆବିର୍ଭାବ ଘଟେ । ଈଶ୍ୱରଙ୍କ ପ୍ରତିଦ୍ୱନ୍ଦ୍ୱୀ ରୂପେ ଦୈତ୍ୟ; ଡେଭିଲ, ସଇତାନ, ଅହିରାମଣ ମାରର ଶତ୍ରୁତାର ଇତିହାସକୁ ପୃଥିବୀ ତା'ର ସ୍ମୃତି ଧାରାରେ ଉଦ୍‌ଜୀବିତ କରି ରଖିଛି । ପୃଥିବୀର ସବୁ କାହାଣୀ ତ ଶତ୍ରୁତାର, ଜୀବନର ସବୁ ମହାକାବ୍ୟ ସଂଗ୍ରାମର ।

ଏ ଧରଣୀ ବୀର୍ଯ୍ୟଶୁଳକା । ତାକୁ ହିଁ ସେ ପ୍ରତିଷ୍ଠାର ବରମାଲ୍ୟ ଦିଏ, ଯିଏ ଆପଣାର ଶୌର୍ଯ୍ୟବୀର୍ଯ୍ୟର ବିନିମୟରେ ତା'ର 'ବହୁମୂଲ୍ୟତାକୁ ସମ୍ମାନ ଦିଏ । ବୀରଭୋଗ୍ୟା ବସୁଧା ତାକୁ ହିଁ ବୀରର ମୁକୁଟ ପିନ୍ଧାଇଦିଏ, ଯିଏ ଶତ୍ରୁ ସପକ୍ଷରେ ସବଳ ପ୍ରବଳ । ଦୁର୍ବଳ ପାଇଁ ଏ ପୃଥିବୀର ହୃଦୟ ଆଜି ଘନ, ସ୍ମୃତି ଅତି କୃପଣ । ଅକିଞ୍ଚନ ପ୍ରତି ହୁଏତ କିଛି ଦୟା ଅଛି, କରୁଣାକଟାକ୍ଷ, ସହାନୁଭୂତି ଅଛି । ତା ସଙ୍ଗେ କି ରହିଛି ଉପହାସ, ତାଚ୍ଛଲ୍ୟ, ଧିକ୍‌କାର ।

ଶତ୍ରୁତା ଅର୍ଜନ କରିବା ମଧ୍ୟ ପୃଥିବୀର ସବୁ ଅର୍ଜନ କ୍ଷମତା ଭଳି ଆଉ ଏକ କ୍ଷମତାର ଯୋଗ୍ୟତା । ଯାହାର ଲଢ଼ିବାର ଶକ୍ତି ଯେତେ ପ୍ରବଳ, ନିଜକୁ ଠିଆ କରାଇବାର ଦୃଢ଼ତା ତାହାଠାରେ ଯେତେ ବେଶି, ତା'ର ପ୍ରତିରୋଧକାରୀ ଶକ୍ତିମାନେ ମଧ୍ୟ ସେତେ ସଂଖ୍ୟାବିପୁଳ, ଦୁର୍ଦ୍ଧାନ୍ତ ଓ ଅସହିଷ୍ଣୁ ।

ସେଇଥିପାଇଁ ତ ସମ୍ମିଳିତ ସେ ଦୁର୍ମଦତା ସହ ବୀରପୁରୁଷର କଠୋର ସଂଗ୍ରାମକୁ ସମଗ୍ର ପୃଥିବୀ ଉଦ୍‌ଗ୍ରୀବ, ଏକାଗ୍ର ହୋଇ ଦେଖି ଲାଗିଥାଏ ।

ଡକାଡ଼କ ହୋଇ ଯେମିତି ଏକ ସଙ୍ଗରେ କଂସ ଗୃଣୂର, ଅଘ, ବକ, ଧେନୁକ, ପୁତନା ବାତ୍ତୁତ କୃଷ୍ଣର ଅପୌରୁଷେୟତା ବିରୋଧରେ ଏକକଣ୍ଠ ହୋଇଯାନ୍ତି ଆଜ ଦେବକୀ-ପୃଥିବୀ କଣ୍ଠାଗତ ହୋଇ ସେଇ ସ୍ପର୍ଦ୍ଧାକୁ ପ୍ରତିଘାତ କରୁଥିବା ଦୃପ୍ତ କୋମଳ କରାଙ୍ଗୁଳି ପାଖେ ନିଜ ଭବିଷ୍ୟତକୁ ସମର୍ପି ଦିଏ ।

ଲଢ଼ିବା ପାଇଁ ଉପଯୁକ୍ତ କାରଣ କ'ଣ ସତରେ କିଛି ଥାଏ ? ଲଢ଼ିକରି ଜିତିନେବା ପ୍ରକୃତ ଯୋଗ୍ୟବସ୍ତୁ ଏପରି କିଛି ଅଛି ଯାହା ମଣିଷପାଇଁ ନିଜଠାରୁ ମୂଲ୍ୟବାନ, ମହତ୍ତର ? ମଣିଷ ଯେତେବେଳେ ବି ତା'ର ନିଜକୁ ବାଦ ଦେଇ, ବାହ୍ୟ ପାଇଁ ଲଢ଼ିଛି, ବାହ୍ୟ ପାଇଁ ନିଜଉପର ବିନିମୟ କରିଛି, ସେ ଲଢ଼ିବାରେ ନିଜର ପରାଭବକୁ ଭେଟିଛି ।

ଲଢ଼ିବା, ଶତ୍ରୁ ସୃଷ୍ଟି କରିବା ସେତିକିବେଳେ ଯଥାର୍ଥ ହୁଏ, ଯେତେ-ବେଳେ ବ୍ୟକ୍ତି ବସ୍ତୁ ପାଇଁ ଲଢ଼େନାହିଁ, ବସ୍ତୁର ମୂଲ୍ୟହୀନତା ପାଖେ ନିଜ ମୂଲ୍ୟକୁ ବଳି ଦିଏ ନାହିଁ, ବରଂ ଏକ ଅମୂଲ୍ୟ ଆଦର୍ଶ ପାଇଁ ନିଜ ଜୀବନକୁ ସବୁ ମୂଲ୍ୟ ପାଖେ ବାଜି ରଖିଦିଏ ।

କିଛି ଯଦି ହାସଲ ହେବାର ଉପଯୁକ୍ତ ଥାଏ, କାହାପାଇଁ ଯଦି ଶତ୍ରୁ ସୃଷ୍ଟି କରିବାରେ ସାର୍ଥକତା ଥାଏ, ତାହା ନିଜର ମଣିଷପଣିଆ ଟିକକ । ଖାଣ୍ଟି ମଣିଷଟିଏ ହେବା ଆଗରେ ସବୁ ପ୍ରତିରୋଧକାରୀ ଭିନ୍ନ ମଣିଷର ଶତ୍ରୁ । ତାହା ଜଣକର ପୁଣି ନୁହେଁ । ସମଗ୍ର ମଣିଷ ଜାତିର ।

ପରସ୍ୱାପହରଣ, ପର ରାଜ୍ୟ ଲୁଣ୍ଠନ, ବୀରତ୍ୱର ପରିଚୟ ନୁହେଁ, ତାହା ଲୋଭ ନିକଟରେ ନିଜର ପରାଜୟ, ଦୁର୍ବଳ ମନର ଆତ୍ମସମର୍ପଣ । ଆଉ ସେ ଲୋଭୀଶତ୍ରୁ ହସ୍ତରୁ ସ୍ୱଦ୍ରବ୍ୟର ସୁରକ୍ଷା, ସ୍ୱରାଜ୍ୟର ନିରାପତ୍ତା ପାଇଁ ସଂଗ୍ରାମ ସ୍ୱାର୍ଥପରତା ନୁହେଁ, ତାହା ଜନ୍ମଗତ ଅଧିକାରକୁ ମର୍ଯ୍ୟାଦାଦାନ ।

ପୃଥିବୀକୁ ଉପଭୋଗର ବସ୍ତୁ ବିବେଚନା କରି ଲୋଭର ଲାଳସାରେ ଅନ୍ଧ ହୋଇଯିବା ପୃଥିବୀ ପକ୍ଷେ କେଡ଼େ ଅମର୍ଯ୍ୟାଦାକର । ଆଉ ଯୁଗାବତାର

ମହାମାନବମାନଙ୍କର ସେ ମାନସିକ ଦୁର୍ବଳତା ବିରୋଧରେ ଲଢ଼ିବା, ପୃଥିବୀକୁ ପ୍ରେମର ଜୀବନ୍ତ ମନ୍ଦିରରେ ରୂପାନ୍ତରିତ କରି ଭବିଷ୍ୟତର ମଣିଷ ହାତରେ ସମର୍ପି ଦେବାର ସଂକଳ୍ପ କରିବା କେତେ ସାହସ ଓ ନିର୍ଭୀକତାର ପରିଚୟ ।

ଗୋଟିଏ ଗୋଟିଏ ମନୁପୁତ୍ରର ସାହସିକ ସଂଗ୍ରାମରେ ଯୁଗଯୁଗର ମାନବ ଜାତିର ଇତିହାସ ଚିହ୍ନିତ ।

ଶକ୍ତିଧର ମଣିଷର ଆଗକୁ ବଢ଼ିଥିବା ଦୁଇପ୍ରକାର ହାତକୁ ଏ ପୃଥିବୀ ଦେଖିଛି । ଗୋଟିଏ ଲୋଭର ହସ୍ତ : ବ୍ୟଗ୍ର, ଉଦଗ୍ର, ବିଷାପ୍ଳୁତ । ଅପରଟି ସମର୍ପଣର ହସ୍ତ : ଶାନ୍ତି, ସ୍ବସ୍ତି, ଆଶୀର୍ବାଦର ଅମୃତସିକ୍ତ ହସ୍ତ ।

ଗୋଟିଏ ଆଘାତର କରହସ୍ତ, ଅପରକୁ କ୍ଷତାକ୍ତ କରି ଆମୋଦିତ; ଅପରଟି ଅନ୍ୟାୟ ଆଘାତର ପ୍ରତିରୋଧକାରୀ ଦୃପ୍ତ ହସ୍ତ, ଅପରକୁ ରକ୍ଷା କରିବାର କୃତାର୍ଥ ।

ଉଭୟଙ୍କ ହସ୍ତ ରଙ୍ଗୀନ୍ ।

ଗୋଟିଏ ହସ୍ତ ରକ୍ତାକ୍ତ, ଅପର ହୃଦୟ ବିଦୀର୍ଣ୍ଣ କରି; ଅନ୍ୟ ହସ୍ତଟି ରଞ୍ଜିତ, ପୃଥିବୀ ସହ ହୃଦ ଅନୁରାଗର ରଙ୍ଗ ହୋରି ଖେଳ ।

ସେଇ ଗୋଟିଏ କ୍ଷୁଦ୍ର ହୃଦୟରେ ବି ଏ ବିଶାଳ ଜଗତ ସମାସୀନ ହୋଇଯାଏ—ଅଥଚ ଲୋଭୀର ମୁଠି ଭିତରେ ନିଜର ସାମାନ୍ୟତାକୁ ବି ଧରି ରଖିବାକୁ ସ୍ଥାନ ମିଳେ ନାହିଁ ।

ଜଗତରେ ସବୁ ସୁନ୍ଦର, ସବୁ ମଧୁର, ସବୁ ଉପଭୋଗ୍ୟ, ଯେତେଯାଏଁ ସେଥିରେ ଲୋଭ ନିଆଁର ଜଳାଧାସ ନ ବାଜିଛି । ଏ ସୁକୁମାର ଫୁଲ-ପୃଥିବୀ ତ ସେତିକବେଳେ ଗଳିତ ଶ୍ମଶାନରେ ରୂପାନ୍ତରିତ ହୁଏ ଲୋଭର ବାସନାର ଲୋମଶ ହସ୍ତ ଯେତେବେଳେ ତା'ର ଗଳାରୁଦ୍ଧ କରେ ।

ଶତ୍ରୁ ସେହି—ଯିଏ ସୁନ୍ଦର ପୃଥିବୀକୁ ଶ୍ରୀହୀନ କରେ । ଶତ୍ରୁତା ତାହାରି ସହ ଯଥାର୍ଥ—ଯିଏ ପ୍ରସନ୍ନ ପୃଥିବୀକୁ ବିଷଣ୍ଣ କରେ, ତା'ର ମଧୁରତାକୁ ତିକ୍ତ କରେ ।

ଯିଏ ଏଭଳି ଶତ୍ରୁକୁ ଚିହ୍ନିପାରେ ନାହିଁ, ବିରୋଧ କରେ ନାହିଁ,—ଯିଏ ପୃଥିବୀର ଏଇ ଧ୍ୱଂସକାରୀ ସତ୍ତା ପାଖେ ନତମସ୍ତକ, ଶରଣାଗତ, ପ୍ରତିବାଦ-ହୀନତାକୁ କ'ଣ 'ଅଜାତଶତ୍ରୁ'ର ମୁକୁଟ ପିନ୍ଧାଇ ଅଭିନନ୍ଦନ କରାଯାଇପାରେ ?

ସେ ତ ପୃଥିବୀର ଶତ୍ରୁ, ସାରା ସୃଷ୍ଟିର ଶତ୍ରୁ, ଆଉ ଆତ୍ମ-ଶତ୍ରୁ ବି ! ଏଭଳି ଅଜାତଶତ୍ରୁ ହୋଇ ବଞ୍ଚିବା—ସେ କିଭଳି ବଞ୍ଚିବା ?

ପୃଥିବୀଠାରୁ ଜାତ ହୋଇ, ପୃଥିବୀର ଅନୁରାଗରେ ଲାଳିତ ହୋଇ ପୃଥିବୀ ପାଖେ ଜନ୍ମ ଜନ୍ମାନ୍ତର ଋଣୀ ପଡ଼ିଥିବା ମାନବାତ୍ମା କେଉଁ ଅଜାତ-ଶତ୍ରୁଭିର ଲୋଭରେ ପୃଥିବୀର ଧର୍ଷଣକାରୀ ପାଖେ ନିଷ୍ଟେଷ୍ଟ ନିରୁପାୟ ରହିଯିବ ?

ସେଇଥିପାଇଁ ତ ପୃଥିବୀର ବରପୁତ୍ରମାନେ ଅଜାତଶତ୍ରୁ ନୁହନ୍ତି, ତାଙ୍କର ଅନେକ ଶତ୍ରୁ ସାଧାରଣ ବ୍ୟକ୍ତିଙ୍କଠାରୁ ଆହୁରି ଅଧିକ ଶତ୍ରୁ ।

ଏ ଶତ୍ରୁତା କିନ୍ତୁ ବ୍ୟକ୍ତିବିଶେଷ ସହ ନୁହେଁ ।

ରାମ ରାବଣର ଶତ୍ରୁ ହୋଇପାରନ୍ତି । କୃଷ୍ଣ କଂସର, ଗୌତମ ଦେବ-ଦତ୍ତର, ଯୀଶୁ ଇହୁଦୀ ପୂଜକମାନଙ୍କର ଶତ୍ରୁ ବିବେଚିତ ହୋଇପାରନ୍ତି । ମାତ୍ର ରାମ, କୃଷ୍ଣ, ବୁଦ୍ଧ, ଯୀଶୁ—କାହାରିକୁ ବ୍ୟକ୍ତିବିଶେଷ ରୂପେ କାହାର ଶତ୍ରୁ ଭାବି ପାରନ୍ତି ନାହିଁ । ରାବଣ-ତ୍ୱ କଂସ-ତ୍ୱ ସହ ସେମାନଙ୍କର ସଂଗ୍ରାମ । ଦେବଦତ୍ତ ନୁହେଁ, ଦେବଦତ୍ତର ନିଷ୍ଠୁରତା ଓ ହିଂସାକୁ ଗୌତମଙ୍କର ପ୍ରତିବାଦ ।

ମହାପୁରୁଷମାନଙ୍କର ଶତ୍ରୁତା କେବଳ ଅମାନୁଷିକତା ସହ ।

ସତ୍ୟ ନ୍ୟାୟ ଧର୍ମ ପ୍ରେମକୁ ନଷ୍ଟ କରୁଥିବା ଜୀବନୀଶକ୍ତି ଅପଶକ୍ତି ବିରୋଧରେ ସେମାନଙ୍କର ଶତ୍ରୁତା । ଧାର୍ମିକ ଅନାଚାର, ସାମାଜିକ ଅପଚାର, ରାଜନୈତିକ ଅତ୍ୟାଚାର ଭିତରୁ ଏ ଶତ୍ରୁତା ଓ ସଂଗ୍ରାମର ଉଦ୍‌ବୋଧନ ।

ବ୍ୟକ୍ତି ନୁହେଁ, ଜାତି ନୁହେଁ, ସୃଷ୍ଟି ସହ ଶତ୍ରୁତା କରୁଥିବା, ଚେତନାର ଅଭ୍ୟୁଦୟ ଓ ବିକାଶକୁ ପଥରୋଧ କରୁଥିବା, ପୃଥିବୀର ଉତ୍ତରଣ ସମ୍ଭାବନାକୁ ଉଚ୍ଛେଦ କରୁଥିବା କ୍ଷୁଦ୍ର, କ୍ଷୀଣ, ସ୍ୱାର୍ଥଲୋଲୁପ ଦୃଷ୍ଟି, ଲୋଭାକୁଳ ଦୁର୍ଦ୍ଧର୍ଷତାସହ ଏ ସଂଗ୍ରାମ ।

ବ୍ୟକ୍ତିବିଶେଷର ମଧ୍ୟ ନୁହେଁ, ତାହା ସମଗ୍ର ମାନବିକ ଚେତନାର ଆଧାରଭୂତ ବ୍ୟକ୍ତିରୂପର ସଂଗ୍ରାମ । ସେଇଥିପାଇଁ ତ ସେମାନେ ଏକ ଏକ ନାମ-ରୂପଧାରୀ ବ୍ୟକ୍ତି ହୋଇ ମଧ୍ୟ ଅନେକ ବ୍ୟକ୍ତିତ୍ୱର ଶକ୍ତି ସାହସ ତେଜରେ ମଣ୍ଡିତ । ଗୋଟିଏ ଦୁର୍ଗାରେ ସବୁ ଦେବଶକ୍ତି ଏକାଗ୍ର; ଗୋଟିଏ ସୁଦର୍ଶନରେ ସବୁ ଦୈବୀତେଜ ପ୍ରଗାଢ଼ ।

ସେମାନଙ୍କ କରାଙ୍ଗୁଳିରେ ନିଖିଳ ବିଶ୍ୱଶକ୍ତି ଆୟୁଧ ହୋଇ ଉଦ୍ୟତ, ସେମାନଙ୍କ ବାଣୀରେ ନିଖିଳ ହୃଦୟର ବଜ୍ରବାଣୀ ଉଦ୍‌ବୋଧିତ, ସେମାନଙ୍କ ବ୍ୟକ୍ତିତ୍ୱରେ ଅନନ୍ତ ଦ୍ୟୁତିର ପ୍ରକାଶ ତେଜ ଉଦ୍‌ଭାସିତ ।

ସେମାନେ ସାଙ୍ଗରେ ଶତ୍ରୁ ଧରି ହିଁ ପୃଥିବୀରେ ଜାତ ହୁଅନ୍ତି ।

( ୨ )

କିଏ ପୃଥିବୀର ଶତ୍ରୁ ନୁହେଁ ?

ସୃଷ୍ଟିର ଶତ୍ରୁ ନୁହେଁ, ଏଭଳି କେହି ଜଡ଼, ଜୀବ ଅଛନ୍ତି ? ପ୍ରତି ମୁହୂର୍ତ୍ତରେ ଆପଣାର ଦୈନ୍ୟ, ଅସାମର୍ଥ୍ୟ, ଖର୍ବତ୍ୱ ଭିତରେ ପାର୍ଥିବ ଚେତନାକୁ ବାନ୍ଧି ରଖୁଥିବା, ଊର୍ଦ୍ଧ୍ୱଯାତ୍ରାପଥରେ ଅସଫଳ ଓ ଅସମର୍ଥ ହୋଇ ଭାଙ୍ଗି ପଡ଼ୁଥିବା ଅନ୍ଧ ବର୍ତ୍ତମାନ—ମାନେ ତ ଅପହଞ୍ଚ ଭବିଷ୍ୟତ ପାଇଁ ଏକ ଏକ ଖଞ୍ଜା ପାତ । ପ୍ରତି ମୁହୂର୍ତ୍ତରେ ପୃଥିବୀର ଭବିଷ୍ୟତକୁ ସମସ୍ତେ ନିଜ ନିଜ ଅକ୍ଷମତା ଭିତରେ ପଥରୋଧ କରି ଆସିଛନ୍ତି ।

ତଥାପି ପ୍ରତିରୋଧ ଭିତରେ ସଂଗ୍ରାମ—ଆପଣାର ଆପଣା ସହ, ସୀମା ସାମର୍ଥ୍ୟର ଆକାଂକ୍ଷା, ସମ୍ଭାବନା ସହ । ସୃଷ୍ଟିର ଚେତନା, ବିକାଶର ଲୀଳାରେ ପ୍ରତ୍ୟେକ ପୃଥିବୀର ଶତ୍ରୁ ପୁଣି ମିତ୍ର । ଚେତନାର ବୃହତ୍ତର ବଳୟକୁ ଧାପେ ଧାପେ ପହଁରି ଯିବାକୁ ଚେଷ୍ଟା କରିବାବେଳେ, ନିଜ ଭିତରୁ ଓ ପରିପାର୍ଶ୍ୱରୁ ହିଂସା, ଦ୍ୱେଷ, କଳୁଷକାମନାର ପରିବୃତ୍ତିକୁ ହଟାଇ ଦେବାକୁ ଚେଷ୍ଟା କରୁଥିବାବେଳେ ପ୍ରତ୍ୟେକ ଏଠି ପୃଥିବୀର ଜଣେ ଜଣେ ସଂଗ୍ରାମୀ ସୈନିକ ରୂପରେ ଆବିର୍ଭୂତ ।

ପ୍ରତିଟି ସତ୍ତ୍ୱ ସୃଷ୍ଟିର ବିକାଶରେ ସହାୟକ ଓ ଅଂଶୀଦାର ଯେତେବେଳେ ସେ ନିଜର ଅସ୍ତିତ୍ୱ ପ୍ରତି ବିଶ୍ୱସ୍ତ ଓ ଋତସତ୍ୟ ପ୍ରତି ନିଷ୍ଠାଯୁକ୍ତ; ପୁଣି ସୃଷ୍ଟିକୁ ନିଜ ହିଂସାଦ୍ୱେଷରିରଂସାରେ ରକ୍ତାକ୍ତ କରିବାକୁ ଉଦ୍ୟତ ହେଉଥିବା ପ୍ରତିଟି ରକ୍ତଚକ୍ଷୁ ସୃଷ୍ଟିର ଶତ୍ରୁ । ସୃଷ୍ଟିର ଏକମାତ୍ର ଭବିଷ୍ୟତ—ସୁନ୍ଦର, ମଙ୍ଗଳ ଓ ପ୍ରେମକୁ (ଯେଉଁ ଚେତନା ଭୂମିରେ ସେମାନେ ସମାର୍ଥ ଓ ଅଭିନ୍ନ)—ନିଜ ନିଜ ସତ୍ୟତା ଭିତରେ ଗ୍ରହଣ କରିନେବାପାଇଁ ଯେଉଁ ସାମର୍ଥ୍ୟ ଲୋଡ଼ା, ତାହାର ଅଭାବରେ ଯେଉଁ କୁଶ୍ରୀତା, ଅଶୋଭନୀୟତା ଓ ଦ୍ୱେଷର ପ୍ରକାଶ ଘଟେ, ତାହାତ ସେମାନଙ୍କର ବିକୃତ ମାତ୍ର, ଛଦ୍ମାବରଣ । ଏ ଛଦ୍ମତା ଭାଙ୍ଗିଦେବା ପାଇଁ ଉଦ୍ୟମ କରୁଥିବା ସଚେତନ ବ୍ୟକ୍ତିଟିଏ ହିଁ ବିପନ୍ନ ପୃଥିବୀର ଆର୍ତ୍ତିହାରୀ ତ୍ରାଣକର୍ତ୍ତା ବୀରପୁରୁଷ (Knignt-at arms) । ଅଜାତ ଶତ୍ରୁତାର ସମ୍ଭାବନା ପଥରେ ସେ ଜଣେ ସଚେତନ ସଂଗ୍ରାମୀ ସୈନିକ, ଯୁଗାବତାର, ପ୍ରଫେଟ୍ ।

ସର୍ବୋତ୍ତମ ଚେତନାର ସର୍ବୋଚ୍ଚ ରୂପାଭିବ୍ୟକ୍ତି କେବଳ ଅଜାତଶତ୍ରୁ ହୋଇପାରେ । ବିରୋଧହୀନ, ଦ୍ୱନ୍ଦ୍ୱହୀନ ଏ ସ୍ଥିତିକୁ ଆସ୍ପୃହା କରି ନିରନ୍ତର ଯେ ସୃଷ୍ଟିର ଦ୍ୱନ୍ଦ୍ୱଛନ୍ଦାୟିତ ଉତ୍ତରଣ ଲୀଳା ଘଟିଚାଲିଛି, ପ୍ରତିଟି ଭୂମି ତା'ର ପ୍ରୟୋଗଶାଳା । ପ୍ରତ୍ୟେକ ଏଠି ସେ ବିରୋଧରେ ଆଘାତକୁ ନିଜ ଭୂମିରେ ଭେଟୁଥାନ୍ତି, ମାନ ନେଉଥାନ୍ତି କିମ୍ବା ପରାଜୟ ସ୍ୱୀକାର କରନ୍ତି, ପୁଣି ବେଳେ ବେଳେ ବିଦ୍ରୋହୀ ଉଷ୍ମତାରେ ଡେଇଁଉଠି ଆପଣାକୁ ବୃହତ୍ତର, କ୍ଷୀପ୍ରତର, ଊର୍ଦ୍ଧ୍ୱତର ବଳୟକୁ ଉତ୍‌କ୍ରାନ୍ତ କରାଇ ନେବାରେ ଲାଗିପଡ଼ନ୍ତି । ଜୟ ପରାଜୟର ସଂଗ୍ରାମ ଭିତରେ ଧାପେ ଧାପେ, ବହୁ କ୍ଷୀଣ, ସନ୍ତର୍ପଣରେ ତଥାପି ପୃଥିବୀ ଚେତନାର ପାହାଚଟିଏ ଚଢ଼ି ଉଠିଆସେ । ଆଉ ଏକ ଆଗାମୀକୁ ହାତମୁଠାରେ ପାଏ । ବିନ୍ଦୁଟିଏ ସମ୍ମିଳିତ ହୁଏ ସ୍ରୋତଧାରାରେ । ଚେତନାର ମହାପ୍ରବାହ ଭିତରେ ଜଡ଼ ହୁଏ ଜୀବ, ଜୀବ ହୁଏ ମାନବ । ଆଉ ମାନବ ? ମହାମାନବ ? ଦେବତା ? ପରମ ଈଶ୍ୱର ?

ଈଶ୍ୱରଙ୍କୁ ବି ଏଠାରେ ଯେ ନିଜ ପ୍ରତିପକ୍ଷ ସହ ଲଢ଼ିବାକୁ ହୁଏ, ସେ କ'ଣ ତାଙ୍କର ନିଜ ପ୍ରତିଛାୟା ? ବିଷ୍ଣୁଙ୍କ ଯୋଗନିଦ୍ରା କି ଶିବଙ୍କ ଯୋଗାସନ ବି ତ ଚିରନ୍ତନ ସ୍ଥିର ଅକଂପିତ ରହେ ନାହିଁ । ଲୟ ଓ ସ୍ପନ୍ଦନର ଦୋଳନରେ ସୃଷ୍ଟିର ପ୍ରାଣତନ୍ତ୍ରୀରେ ଯେ କଂପନ ଜାଗିଉଠେ, ତାହା

ଏକାଧାରରେ ଆପଣାଠାରୁ ଉଡ଼ୁଙ୍କି ପଡ଼ୁଥିବା ଆକୁତି ଓ ଆପଣା ପାଖକୁ ଫେରି ଆସିବାକୁ ଉଦ୍ୟତ ଉଦଗ୍ର ବ୍ୟାକୁଳତା ବି ।

ଯେଉଁ ମୁହୂର୍ତ୍ତରେ ଈଶ୍ୱର ଆପଣା ଆଗରେ ଆପଣାକୁ ଦର୍ପଣଟିଏ କରି ଦେଖିବସନ୍ତି, ସେ ହୋଇଯାନ୍ତି ବିଧାତା ପୁରୁଷ, ସୃଷ୍ଟିକର୍ତ୍ତା । ଆପଣାର ସବୁ ବିସୃଷ୍ଟିର ଅନ୍ଧାର ଭିତରୁ ଆଲୋକ ରେଖାଟିଏ ହୋଇ, ସବୁ ନିଃଶବ୍ଦତାର ନିଶ୍ଚେତନା ଭିତରୁ ଧ୍ୱନିଟିଏ ହୋଇ ସେ ଆପଣାକୁ ଦେଖିବାକୁ ଶୁଣିବାକୁ ମନକରି ବସିବାବେଳେ ଆପଣାକୁ ହିଁ ଦୁଇଭାଗ କରି ଶବ୍ଦ ତାର ରୂପ ଆସ୍ୱାଦନ କରନ୍ତି । ଅନ୍ଧାର ଆଲୁଅ, ନିଃଶବ୍ଦତା ଶବ୍ଦ, କ'ଣ ପରସ୍ପରର ଶତ୍ରୁ ନା ଈଶ୍ୱର ଆପଣାର ସୃଷ୍ଟି ରୂପକୁ ଅଜାତଶତ୍ରୁତ୍ୱର ସଂଗୁପ୍ତ ଭବିଷ୍ୟତକୁ ଘେନିଯିବା ପାଇଁ ଏ ଦ୍ୱନ୍ଦ୍ୱାଭାସଟିଏ ରଚନା କରନ୍ତି, ଦୁଇ ତୀରର ଅପରିହାର୍ଯ୍ୟତା ଭିତରେ ଜଳଧାରାଟିଏ ପ୍ରବାହମୟ ହୋଇଉଠିବା ପରି, ନୀରବ ବାଦ୍ୟତନ୍ତ୍ରୀଟି ଆଙ୍ଗୁଳି ଆଘାତରେ ସଙ୍ଗୀତମୟ ହୋଇଉଠିବା ପରି, ଆପଣାକୁ ପ୍ରତିଚ୍ଛାୟିତ କରି ବିଧାତା ତା' ଭିତରେ ଅବ୍ୟକ୍ତକୁ ବ୍ୟକ୍ତ-ଭୂମିରେ ପ୍ରତିଷ୍ଠାପିତ କରାନ୍ତି ? ଅଜାତ ଶତ୍ରୁ ହେବାର ସିଦ୍ଧିମନ୍ତ୍ର କ'ଣ ଏଇ ସଚେତନ ଆତ୍ମ-ଅତିକ୍ରମଣ ଆସ୍ପୃହା, ଯାହାକୁ ଆମେ ମହାମାନବତାର କର୍ମ ଅଭିବ୍ୟକ୍ତିରେ ରୂପ ପରିଗ୍ରହୀତ ଦେଖୁ ?

ଆକାଶ ଆଲୁଅର ନିଜଘର; ଅଥଚ ସେ ଆକାଶ ଚିର ଅନ୍ଧକାର । ଆଲୁଅକୁ ଧରି ରଖି ମଧ୍ୟ ନିଜେ ଆଲୋକିତ ହୋଇପାରେ ନାହିଁ ।

ଅନ୍ଧାରର ନିଜ ରୂପ କିଛି ନାହିଁ । ଆଲୋକରେ ତାର ରୂପହୀନତାର ଆବିଷ୍କାର । ଅନ୍ଧାରର ନିଜସ୍ୱ ଗାନ ବି କିଛି ନାହିଁ । ସବୁ ଗୀତ ହଜିଯିବାର କାରୁଣ୍ୟ ହିଁ ଅନ୍ଧାରର ନିଜସ୍ୱର । ମହାଶୂନ୍ୟର ମହାନ୍ଧକାର ଚିର-ଜ୍ୟୋତିଃପୁଞ୍ଜ ଦେଦୀପ୍ୟ । ଅନ୍ଧାର ବାଧା ଦେଇପାରେ ନାହିଁ । ଆଲୁଅର ବାଟ ରୋକିପାରେ ନାହିଁ । ମାତ୍ର ନିଜେ ଆଲୋକିତ ହୋଇପାରେ ନାହିଁ ।

ଆଲୋକିତ ହେବାର ସାମର୍ଥ୍ୟ, ଆଲୋକ ଗ୍ରହଣ କରିବାର ସାମର୍ଥ୍ୟ ଦୂର ପୃଥିବୀର । ଏ ପୃଥିବୀ ତାହା ସମ୍ଭାବିତ କରିପାରେ, ଯାହା ତାର ଧରିତ୍ରୀ-ଛୁଆଁର ବାହାରେ ବୋଲି ପ୍ରଥମରୁ ତାକୁ ଶୁଣାଇ ଦିଆଯାଇଥାଏ ।

ଆଲୋକରୁ ଜନ୍ମ ଯେ ପୃଥିବୀର, ଅନ୍ଧାରକୁ ଚିରନ୍ତନ ଭାଗ୍ୟ ବୋଲି ମାନିନେଇ ପାରେନାହିଁ; ଆଲୋକ ଯେ ତାର ଭବିତବ୍ୟ ।

ଏତେ ହତଶ୍ରୀ କୁତ୍ସିତତା ଭିତରେ ବି ସୁନ୍ଦରର ସେ ସ୍ପର୍ଶାନୁଭୂତିଟି କେଉଁଠି ଲୁଚି ରହିଥାଏ । ମନେହୁଏ ତାକୁଇ ନ ଦେଖିବା ପର୍ଯ୍ୟନ୍ତ କିଛି ଦେଖା ସାର୍ଥକ ହେଲାନାହିଁ ।

ସୁନ୍ଦରତା, ମଧୁରତା, ପୃଥିବୀର ଅପହଞ୍ଚ ସ୍ୱପ୍ନ ନୁହନ୍ତି, ସୁଦୂର ବାସ୍ତବତା ମାତ୍ର ! ସେଇଥିପାଇଁ ତ ଆକାଶର ଟୋପାଏ ବର୍ଷା ବିନ୍ଦୁର ମଧୁରତାରେ ସମଗ୍ର ଲବଣ ସମୁଦ୍ର ଅମୃତ ହୋଇ ଉଚ୍ଛୁଳିଉଠେ ।

ଫୁଲଟିଏ ଫୁଟିଗଲେ, ଶିଶୁଟିଏ ହସିଦେଲେ, ଉଦ୍‌ଭିନ୍ନ ହେବାର ସବୁ ଶ୍ରମ ଯନ୍ତ୍ରଣା ସାର୍ଥକ ହୋଇଯାଏ ।

ପୃଥିବୀର ଜୀବନ ଏଇ ଗୋଟିଏ ମୁହୂର୍ତ୍ତର ତ, ଯେଉଁ ମୁହୂର୍ତ୍ତଟିରେ ବାକି ଆଉ ଅନେକ ମୁହୂର୍ତ୍ତର ଶ୍ରମ ସ୍ୱେଦ ଶ୍ରାନ୍ତି ଚରିତାର୍ଥତା ଲଭନ୍ତି ।

ଗୋଟିଏ ମୁହୂର୍ତ୍ତର ଆଲୋକ ସ୍ଫୁରଣ ପାଇଁ ଅନେକ ମୁହୂର୍ତ୍ତର ଝକମକ—ଘର୍ଷଣ ସେଇ ଗୋଟିଏ ଆଲୋକ-ଦୀପ୍ତ ମୁହୂର୍ତ୍ତରେ କୋଟି କୋଟି ଯୁଗର ପୁଞ୍ଜୀଭୂତ ଅନ୍ଧକାର ଦୂର ହୋଇଯାଏ ।

ଅନ୍ଧକାର ଆଲୋକର ବିପରୀତ ? କୁତ୍ସିତ ସୁନ୍ଦରର ବିନାଶକାରୀ ? କଟୁତା ମଧୁରତାର ବିଦ୍ୱେଷକାରୀ ?

ଅଥବା ଏକ ଅପରର ପ୍ରତିଚ୍ଛାୟା, ପ୍ରଚ୍ଛଦପଟ କିମ୍ବା ପ୍ରସ୍ତୁତିପର୍ବ ? ଶୋକର ହାହାକାରରୁ ଯେ ଶ୍ଳୋକର ସାମଛନ୍ଦ ସୃଷ୍ଟିହୁଏ ।

ଯଜ୍ଞର ଅଗ୍ନିକୁଣ୍ଡରୁ ବର୍ଷାର ସଜଳ ପ୍ରତିଶ୍ରୁତି ଧ୍ୱନିତ ହୁଏ ।

ଜୀବନର ରୁକ୍ଷ କଠୋର ତପସ୍ୱୀ ସାଜରୁ ଶାନ୍ତ ସ୍ନିଗ୍ଧ ମହିମାର ସ୍ମିତି ଉଦ୍ଭବ ହୁଏ । ଶତ୍ରୁତାର ବଳ କଷାକଷି ଭିତରୁ ଅଜାତଶତ୍ରୁ ଆବିର୍ଭାବର ଅପେକ୍ଷାରେ ମୁହୂର୍ତ୍ତ ଗଣେ ।



# ସୁନା ହରିଣ

ସୁନାହରିଣ ଯେ ପୃଥିବୀର ନାସ୍ତି !

ପୃଥିବୀ-ସୀତାର ଅପରିହାର୍ଯ୍ୟ ଅନ୍ୱେଷିତ ବିଡ଼ମ୍ବିତଭାଗ୍ୟ ସୁନାହରିଣ ପାଇଁ ପୃଥିବୀର ବ୍ୟାକୁଳତାକୁ କିଏ ସୁନାର ମୂଲ୍ୟରେ ମାପି ଦେବ ନା ହରିଣର ମୂଲ୍ୟରେ କଳିଦେବ ? ସୁନା ନୁହେଁ କି ହରିଣ ନୁହେଁ, ପୃଥିବୀ ତ ଏ ଉଭୟଙ୍କୁ ସେମାନଙ୍କର ନିଜ ମୂଲ୍ୟରେ ପାଇସାରିଛି । ତଥାପି ସୁନାହରିଣର ମୂଲ୍ୟ ଦେଇପାରିନାହିଁ । ସୁନାର ହରିଣ ପୃଥିବୀ ବକ୍ଷରେ ଅସମ୍ଭବ ବୋଲି ତ ମୂଲ୍ୟାକଳନର ଏ ଅସମର୍ଥତା । ଯାହା ମିଳେ ପୃଥିବୀରେ ତାର ମୂଲ୍ୟ କ'ଣ ଅଛି ? ମୂଲ୍ୟ ଯାହାର ଦେଇହୁଏ, ପୃଥିବୀରେ ତାର କିଏ କିଛି ସ୍ୱୀକୃତି ଅଛି ? ନିଜ ମୂଲ୍ୟ କେହି ଠିକ୍ କରି ଏ ପୃଥିବୀରୁ ପାଏ ନାହିଁ, ଅଥଚ ପୃଥିବୀର ମୂଲ୍ୟରେ ମାପି ହେବାପରେ ସବୁ ଆପଣା ପାଖେ ମୂଲ୍ୟହୀନ ହୋଇପଡ଼ନ୍ତି । ସୁନାହରିଣ ମୂଲ୍ୟମୂଲର ବାହାରେ ବୋଲି ପୃଥିବୀ ପାଇଁ ଏତେ ମୂଲ୍ୟବାନ । ଆପଣାର ମୂଲ୍ୟହୀନତାକୁ ଦିନରାତି ସାଉଁଟୁଥିବା ପାର୍ଥିବ ବସ୍ତୁର ବୁଦ୍ଧି ହୁଏତ ସେଇଥିପାଇଁ ସୁନାହରିଣର ଅଭିଳାଷକୁ ଅପସନ୍ଦ କରେ, କଟାକ୍ଷ କରେ, ମୂର୍ଖତା, ବୋକାମି, ଅଚତୁରତା ବୋଲି ସାବ୍ୟସ୍ତ କରିବାକୁ ତତ୍ପର ହୋଇଉଠେ ।

ସୁନାହରିଣକୁ ନେଇ ଏ ପୃଥିବୀ ତାର ନିତିଦିନିଆଁ ବଜାର ହାଟରେ ସୁନା ବା ହରିଣ ଭଳି ବିକାକିଣା କରିପାରିବ ନାହିଁ । ଅମୂଲ୍ୟ ବୋଲି ହିଁ ସେ ସ୍ୱପ୍ନାଭିଳାଷକୁ ଆପଣାର ଗୁହ୍ୟମଣି କରି ସାଇତି ରଖିବାକୁ ଚାହିଁବ । କିନ୍ତୁ ପୃଥିବୀର ଦୁର୍ଭାଗ୍ୟ ଯେ କିଛି ଧରି ରଖିବାର ଶକ୍ତି ତାର ନାହିଁ । ତାର ଅଭିଳଷିତ ଚିରନ୍ତନ ତାର ପ୍ରାପ୍ତି-ଭାଗ୍ୟର ସାମର୍ଥ୍ୟ ବାହାରେ ।

ପୃଥିବୀ ପାଇଁ ଈଶ୍ୱରଙ୍କ ଭଳି ସୁନାହରିଣ ଆଉ କିଏ ଅଛି ? ଧରିତ୍ରୀର ସବୁ ରୂପରଙ୍ଗକୁ ତୁଚ୍ଛକରି ସେ ଅରୂପର ଅପରୂପ ଲୀଳାଖେଳା ରୂପର ରୋଷଣୀ ଜଳାଇଦିଏ । ପୃଥିବୀର ଗୁହାରେ ଜାଗରିତ ସବୁ ଇଚ୍ଛାଭିଳାଷକୁ କ୍ଷୀଣ କରି

ସେ ଉଚାଟନର ମୋହନ ବଂଶୀ ବାଜଉଠେ । ପୃଥିବୀର ସବୁ ବାସନାନଳକୁ ନଷ୍ଟ କର ଦେ ତୃଷ୍ଣାର ତୁଷାନଳ ଜଳଉଠେ । ଲହରର ତରଙ୍ଗରେ ଯେଉ କାମନାର ଉଦ୍‌ବେଳ, ଆକାଶର ତାର ଆଖିରେ ବ ସେଇ ଦୁରନ୍ତ ଆଗ୍ରହର ଅତନ୍ଦ୍ର ଖେଳ ।

ପୃଥିବୀର ଭାଗ୍ୟକୁ ବଡ଼ମ୍ବିତ କର ଈଶ୍ୱର କଣ ସବୁଦନ ତାର ଧର ଛୁଆଁର ବାହାରେ ରହଯିବେ ।

ପୃଥିବୀର ସେ ଅପାର୍ଥିବ ଅଭିଳାଷ ତ ସୃଷ୍ଟି କାଳରୁ ତାର ମର୍ମଗତ । ପୃଥିବୀରେ କଣ ବା ଅସମ୍ଭବ ନୁହେଁ ? ଦୁରଭିଳାଷ ନୁହେଁ ? ସୂର୍ଯ୍ୟଠାରୁ ସଦ୍ୟଛିନ୍ନ ଏ ଜ୍ୱାଳାମୟ ଅଗ୍ନିପିଣ୍ଡଟି ପାଇଁ ସେଦନ ମେଘପାଣିର ଶୀତଳତା ସୁନାହରଣ ହୋଇ ଦେଖାଦେଇଛି ସବୁଜ ଘାସ, ରଙ୍ଗଫୁଲ, ପ୍ରଜାପତ ମହୁମାଛି, ଜୀବଜନ୍ତୁ ଆଉ ମଣିଷ, ଅଚେତନ ଜଡ଼ ଏ ପୃଥିବୀ ଆଖିରେ ଜୀବନର ଏ କଳକୋଳାହଳ ସୁନାହରଣ ସାଜ ଅବଲୀଳାକ୍ରମେ ନାଚ ଯାଇଛନ୍ତି । ପୃଥିବୀ ମୁହୂର୍ତ୍ତ ମୁହୂର୍ତ୍ତ କର ଆପଣାର କ୍ଷୀଣପାଦରେ ସେ କନକମୃଗ ପଛେ ଧାଇଁଛି । ନତ ତାର ନୂଆ ରୂପ ଦେଖିଛି । ନତ ନୂଆ ବାଟଚଲା ଶିଖିଛି । ଆପଣାର ପ୍ରଥମ ପାଦରୁ ଶିଥିଳତା ତୁଟାଇ ସ୍ୱର୍ଣ୍ଣମୃଗ ସନ୍ଧାନରେ ସେ ଯେ ତାର ସମ୍ମୋହତ ଦିଶିଯୁ ପାଦ ଉଠାଇଛି, ସେଇ ତ ତାର ବଞ୍ଚିବାର ନଶାଗ୍ରସ୍ତ ତତ୍ପରତା, ଭବଷ୍ୟତକୁ ଉତ୍ପାଦପାଦତା ।

ଦୂରପ୍ରାଚ୍ୟ, ପ୍ରବାଳ ଦ୍ୱୀପ, ଚନ୍ଦ୍ରାଭିସାର, ଗ୍ରହାନ୍ତର ଜୀବନ ସବୁତ ଏକେ ଏକେ ପୃଥିବୀର ଲୋଭତୁର ଆଖି ଆଗେ ଅପହଞ୍ଚ ଏଲଡ଼ୋରାଡ଼ୋ, ଅନ୍ୱେଷିତ ସ୍ୱର୍ଣ୍ଣଦ୍ୱୀପ ।

ସୁନାହରଣ ପଛରେ ଅହରହ ଧାଉଁଥିବା ଏ ଜୀବନ; ଠିକ ଦୃଷ୍ଟି-ରେଖାର ସେପାଖରେ, ବଢ଼ାଇଥିବା ହାତର ଛୁଆଁ ବାହାରେ, ପକାଇଥିବା ପାଦର ଆଙ୍ଗୁଠିଗାର ଆଗରେ ଯାହାର ମନଲୋଭା ନାଚ, ମୋହିନୀ ମାଧୁରୀ । ଗଖିର ଜଳକୁ ଅପସର ଯାଉଥିବା ଅପହଞ୍ଚ ସୁନାପକ୍ଷୀ, ଅଥଚ ଏଇ ଧର ଦେଉଛି ବୋଲି ମନେକରାଇ ଦେଇ କେଡ଼େ ଅତର୍କିତ ଭାବରେ ଉଆଁମାର ଆଗରେ ପୁଣି ସେ ତା ସୁନାପାଖୁଡ଼ାରେ ଚଉଷଠୀ ଯୋଗିନୀ ନାଚ ନାଚେ ।

ଅତଏବ ପାର୍ଥିବ ବୁଦ୍ଧିବର୍ଗର ବାରବାର ସୁନାହରଣକୁ ଅସମ୍ଭବ ଅପ୍ରାପ୍ୟ କହୁଥିଲେ ମଧ୍ୟ ପୃଥିବୀର ହୃଦସ୍ଥ ସେ ବିରାଟ ସମ୍ଭାବନାର ପ୍ରତ୍ୟାଶାରେ ନିତ୍ୟସ୍ପନ୍ଦିତ, ତା ପାଇଁ ତେଣୁ ସୁନାହରଣ ଭଳି ନିଶ୍ଚିତ ଭବିତବ୍ୟ ଆଉ କଣ ଅଛି ? ପୃଥିବୀର ସନ୍ତାନ ପୃଥିବୀର ସେ ଅଭିଳାଷକୁ ଉତ୍ତରାଧିକାର ସୂତ୍ରରେ ଲାଭ କରିଛି । ପୃଥିବୀର ଭବିଷ୍ୟତ—ସ୍ୱପ୍ନକୁ ନିଜ କାମନାର ଜରାୟୁରେ ଧାରଣ କରିଛି । ପୃଥିବୀର ଭବିଷ୍ୟତ କ'ଣ ପରିକୁଡ଼ିଆର ବନ୍ଦୀଗାର ଭିତରେ ବନ୍ଧା ରହିବ ? ଦିଗନ୍ତ ଆବିଷ୍କାର କରିବ ନାହିଁ ? ସାଗର ଲଂଘନ କରିବ ନାହିଁ ? ଦୂରଦୂରାନ୍ତର ପ୍ରଦକ୍ଷିଣ କରିବ ନାହିଁ ?

ସେଇଥିପାଇଁ ତ ଲକ୍ଷ୍ମଣଙ୍କ ନିଷେଧ ସତ୍ତ୍ୱେ ଗାର ଟପିବାକୁ ହୁଏ । ପୃଥିବୀର ଅବବୋଧ ବାହାରେ, ଅବବୋଧ-ନିର୍ଣ୍ଣୀତ ବାସ୍ତବତା ବାହାରେ ଯେ ସତ୍ୟ ସେଇତ ସୁନାହରଣ । ଅଦ୍ଭୁତ ରୂପରେ, ଅସାମାନ୍ୟ ରୂପରେ ଆସେ ବୋଲି ତ ସେ ଅଜଣା ସମ୍ମୋହନ ପାଇଁ ପୃଥିବୀ ଉଚ୍ଚାଟ ହୁଏ । ସୀତାହରଣର ଯାତନା ବରଣକରେ । ବନ୍ଦୀଗାର ରୂପକ ନିରାପତ୍ତା ପୃଥିବୀର ଭବିଷ୍ୟତ ନୁହେଁ, ଶ୍ୱାସରୁଦ୍ଧତା; ତାହା କେବଳ ପୃଥିବୀର ବର୍ତ୍ତମାନ ହୋଇପାରେ ଏବଂ କାଳାଧୀନ ପୃଥିବୀ କେବେବି କେବଳ ବର୍ତ୍ତମାନ ପାଖେ ବନ୍ଧା ପଡ଼ିପାରେ ନାହିଁ । ଏକ କାଳକୁ ଚିରକାଳ ମାନି ନେଇ ପାରେନାହିଁ ।

ପୃଥିବୀର ସବୁ ବର୍ତ୍ତମାନ ଯେ ବନ୍ଦୀଗାର ଭିତରେ ବନ୍ଧା । ସବୁ ମୁହୂର୍ତ୍ତରେ ତା' ପାଇଁ ନିଷେଧାଜ୍ଞା ଜାରି ହେଉଥାଏ, ସୀମାରେଖା ଟଣା ହେଉଥାଏ, ସାମର୍ଥ୍ୟ ଆକଳନ ହେଉଥାଏ, ଆଉ ଅହରହ ପୃଥିବୀ ତାକୁ ଉଲ୍ଲଙ୍ଘନ କରିବାକୁ ଚେଷ୍ଟା କରୁଥାଏ । ଆଗରେ ହେମହରିଣୀ ନାଚୁନଥିଲେ ପୃଥିବୀ କାହିଁକି ବନ୍ଦୀଗାର ବାହାରକୁ ଦେଖନ୍ତା ? କାହିଁକି ଆପଣାର ପରିସୀମା ଅତିକ୍ରମ କରିବାକୁ ବସନ୍ତା ? ସ୍ଥିତାବସ୍ଥାକୁ ସ୍ୱୀକାର କରିନେଇ ପାରେନାହିଁ ବୋଲି ତ ସେ ଅସ୍ଥିର ପାଦ ହୁଏ । ଯାହା ମିଳେ, ଯଥେଷ୍ଟ ନୁହେଁ ଅନୁଭବ କରିଛି ବୋଲି ତ ଅଭିଳଷିତ ତାର ମାଟିରୁ ଆକାଶ ପର୍ଯ୍ୟନ୍ତ, ପିତୃକୋଡ଼ରୁ ଧ୍ରୁବପଦ ପର୍ଯ୍ୟନ୍ତ ଉଦ୍ବେଳିତ ହୋଇଯାଏ ।

ନିଶ୍ଚେତନାରୁ ପରମ ଚିନ୍ମୟତା—ପୃଥିବୀର ଏ ଯାତ୍ରାଭିସାରରେ ପ୍ରତିଟି ଚେତନାବଳୟ ଯେ ପୂର୍ବସ୍ଥିତିର ଉତ୍କ୍ରାନ୍ତି ଓ ସେ ଉତ୍କ୍ରମଣ ଯେ

ବହୁ ଅଭିଳାଷ, ବ୍ୟାକୁଳତା, ଉଦ୍‌ଗ୍ରୀବା, ଶ୍ରମ, ସ୍ୱେଦ ଏବଂ ତିମିରଗାର ଲଙ୍ଘି-ବାର ଦୁଃସାହସିକ ପ୍ରାଣମୂର୍ଚ୍ଛା । ପରିଣତି, ତାହା ଜଡ଼ରୁ ଉଦ୍‌ଭିଦ, ଆମିବାରୁ ମଣିଷ, ଆଉ ଅଗ୍ନିର ବ୍ୟବହାର କୌଶଳ ଆବିଷ୍କାରଠାରୁ ମହାକାଶ ଭ୍ରମଣ ପର୍ଯ୍ୟନ୍ତ ପ୍ରତ୍ୟକ୍ଷିତ ହୋଇ ଆସିଛି ଏବଂ ପୃଥିବୀର ଭବିଷ୍ୟତକୁ ଆହୁରି ସୁନା-ହରିଣର ପ୍ରଲୋଭନମୟ ପ୍ରତିଶ୍ରୁତିରେ ଯେ ଏମିତି ଅନିଶ୍ଚିତ ଶେଷହୀନ ପଥରେ ନିରୁଦ୍ଦେଷ୍ଟ କରି ଛାଡ଼ିଦେଇଛି,—ସେ ସୁନାହରିଣ ସ୍ୱପ୍ନରୁ ପୃଥିବୀର କ'ଣ ମୁକ୍ତି ଅଛି ।

ମରଣ ଆଗରେ ମୁକ୍ତି ଭଳି; ଜୀବନ ଆଗରେ ପ୍ରେମ ଭଳି ଆଉ ସ୍ୱର୍ଣ୍ଣ-ମୃଗ କ'ଣ ଅଛି ? ହବ୍ୟ ପ୍ରେମ ଭଳି ଆଉ ଏଭଳି ଆକର୍ଷଣୀୟ ହରିଣମୟ-ସ୍ୱପ୍ନ ଯୁଗ ଯୁଗ ଧରି ମାନବାତ୍ମା ଆଗରେ କ'ଣ ଉଭା ହୋଇଛି ?

ହୋଇପାରେ, ସୁନାହରିଣମାୟା, ମିଥ୍ୟା; ଭ୍ରାନ୍ତି । ପୃଥିବୀର ଆଦ୍ୟୋପାନ୍ତ୍ୟ ସ୍ୱରୂପକୁ ଛାଡ଼ି ଏଇ ସ୍ୱର୍ଣ୍ଣମୃଗର ଭ୍ରାନ୍ତି; ପ୍ରାପ୍ତି ପରର ରହସ୍ୟ ଭେଦରେ ତାହା ହୁଏତ ମାରୀଚର ମାୟା । ମାତ୍ର ସେ ମାୟାର ଛଳନା ନ ଥିଲେ ପୃଥିବୀର ସତ୍ୟାଭିଜ୍ଞାନ ଯେ ଭ୍ରାନ୍ତିବଳୟରେ ବନ୍ଦୀ ରହିଯାନ୍ତା । କେବଳ ଆଶ୍ଚର୍ଯ୍ୟ, କେବଳ ବିସ୍ମୟ, କେବଳ କୌତୂହଳରେ କ'ଣ ଜୀବନର ରୂପାନୁଭୂତିର ପଥ ଉନ୍ମୋଚିତ ହୁଅନ୍ତା ? ମାୟାର ରହସ୍ୟ ଭେଦକରି ତାର ମିଥ୍ୟାତ୍ୱକୁ ଆବିଷ୍କାର କଲାପରେ ତ ଭ୍ରାନ୍ତିର ନିରସନ, ପ୍ରଲୋଭନର ଅବସାନ, ସତ୍ୟର ପ୍ରତିଷ୍ଠା । ସୁନାହରିଣର ରୂପରହସ୍ୟ ଭେଦକରି କୌତୂହଳମୁକ୍ତ ଓ ବାସନାମୁକ୍ତ ହେବା କେବଳ ବୁଦ୍ଧିମାନର କାର୍ଯ୍ୟ ନୁହେଁ, ଶକ୍ତିମାନର କାର୍ଯ୍ୟ । ବୁଦ୍ଧି ତ ସୁନାପୁଅ, ସାବଧାନ—ଅଜଣା ଆପଦ ଭୟରେ ଘରକୋଣରେ ମୁହଁ ଗୁଞ୍ଜି ଶୋଇବା ବିପଦକୁ ଲଂଘିବାର ସାହସ ଛାତିରେ ଥିଲେହିଁ ଶକ୍ତିମାନ ଅଜଣାକୁ ଲମ୍ଫଦେବ । ଅଜ୍ଞେୟ ମୃତ୍ୟୁଲୋକକୁ ନଚିକେତାର ଧ୍ରୁବାଭିସାର ହେବ । ସେଇଥିପାଇଁ ତ 'ନାୟମାତ୍ମା ବଳହୀନେନ ଲଭ୍ୟ' ।

ଯଦି ଅସମ୍ଭବ ମାନେ ମିଥ୍ୟା, ପୃଥିବୀ ପାଇଁ ଈଶ୍ୱରଙ୍କ ଭଳି, ଦୈବୀକ ସମ୍ଭାବନା ଭଳି ମିଛ ଆଉ କଣ ଅଛି ? ଈଶ୍ୱର କଣ ଏକ ପ୍ରବଳ ସମ୍ମୋହନ-କାରୀ ମଧୁର ଭ୍ରାନ୍ତି ନୁହନ୍ତି ଯେ ସୃଷ୍ଟିକାଳରୁ ପୃଥିବୀକୁ ଜଣାଅଜଣା ବହୁବାଟରେ ଭୁଲାଇ ଆସୁଛନ୍ତି । ଶାନ୍ତି, ସୌନ୍ଦର୍ଯ୍ୟ, ଆନନ୍ଦ—ଐଶୀ ବିଭବର ଏଭଳି

ଝଲମଲ ସୁନାହରିଣ ରୂପ ଏ କୁତ୍ସିତ, ଅଶାନ୍ତ ନିରାନନ୍ଦ ପୃଥିବୀ ପାଇଁ ଆଉ କଣ ଅଛି ? ଅଧିକ ସମ୍ମୋହନର ମନ୍ତ୍ର କଣ ଅଛି ? ସେତକ ଧାଇଁବା ଭିତରେ ସେଇ ସମୟଟକ ପୃଥିବୀ ଯେ ଆପଣାର କୁଶ୍ରୀତାକୁ, ନିରାନନ୍ଦତାକୁ, ଗ୍ଲାନିକୁ ବିସ୍ମୃତ ହୋଇଯାଏ । ଅଣୀ—ସାଧିକାର ପରିଚୟ—ପରିତୃପ୍ତିରେ ଆପଣା ପାଖେ ସାର୍ଥକ ହୋଇଯାଏ ।

ପୃଥିବୀ ହୁଏତ ଜାଣେ, ତାର ସବୁ ଉଦ୍ୟମ, ପ୍ରାଣାନ୍ତକତା ସତ୍ତ୍ୱେ ଈଶ୍ୱର ତାପାଇଁ ଚିର ସୁନାହରିଣ; 'ହିରଣ୍ମୟପାତ୍ର-ଗୁପ୍ତ' ହୋଇ ରହିଯିବେ ! ତଥାପି ପୃଥିବୀର ଆଶ୍ୱାସନା ଯେ ଈଶ୍ୱରଙ୍କୁ ଭୁଲିନାହିଁ । ମିଥ୍ୟା ବୋଲି ଅସ୍ୱୀକାର କରିନାହିଁ କି ଅସମ୍ଭବ କହି ମୁହଁ ଫେରାଇ ନାହିଁ । ଦିବ୍ୟାଭିଳାଷକୁ ନିର୍ବାସନ ଦେଇନାହିଁ ବା ନିଜକୁ ଆପଣାର କ୍ଷୁଦ୍ର ପାର୍ଥିବ ସୀମାରେଖା ଭଗ୍ନଜାନୁ ସୈନିକ ଭଳି ଅସହାୟ ସମର୍ପଣ କରିଦେଇ ନାହିଁ । ପ୍ରତିମୁହୂର୍ତ୍ତରେ ଆପଣାର ସୀମା—ସାମର୍ଥ୍ୟକୁ ଅତିକ୍ରମ କରିବାର ଶ୍ରମରେ ସେ କଣ୍ଠାଗତ ହୋଇ ମୁହୂର୍ତ୍ତେ ଅତିକ୍ରାନ୍ତ ଭୂମିର ଉଲ୍ଲସିତ ବଳୟରେ ଈଶ୍ୱରଙ୍କୁ ପ୍ରାର୍ଥନା କରି ପୁଣି ଉତ୍ତରଣ ପଥର ଶ୍ରମ-ସାଧନାକୁ ବରିନେଇଛି । ଶେଷ ପର୍ଯ୍ୟନ୍ତ, ହୁଏତ ପୃଥିବୀର ଅନ୍ତିମକାଳ ପର୍ଯ୍ୟନ୍ତ ଏଇପରି ସେ ତାର ଅପହଞ୍ଚ ସୁନାହରିଣର ଯଥାସାଧ୍ୟ ସନ୍ଧାନ କରି ଶେଷରେ ଈଶ୍ୱରଙ୍କୁ ତାର ଗ୍ଳେଟିଆ ପ୍ରତ୍ୟୁତ୍ତରଟିଏ ଦେବ, ମୁଁ ତୁମ ସମ୍ମୋହନକୁ ଜାଣିଛି, ଆକର୍ଷଣକୁ ବୁଝିଛି, ତୁମପାଇଁ ନିଶ୍ଚିତ ଜୀବନକୁ ଅସ୍ୱୀକାର କରି ଅନିଶ୍ଚିତତାର ଅରଣ୍ୟପଥରେ ଆପଣାକୁ ଛୁଟାଇ ଦେଇଛି ।

ଈଶ୍ୱର ହୁଏତ ଧରାଦେବେ ନାହିଁ; ମାତ୍ର ସେ ଜନଗାର ବାହାରକୁ ନିଶ୍ଚେ କାଢ଼ିନେବେ । ସାମାଜିକ ନିୟମ, ସାଂସାରିକ ପ୍ରୟୋଜନ, ପାର୍ଥିବ ସ୍ଥିତିର ସକଳ ପରିସୀମା ଭିତରୁ ହୃଦୟ-ସୀତା ଯେ ଅସମ୍ଭବ ଅପାର୍ଥିବତାକୁ କାମନା କରିବ, ଜୀବନ-ରାମ ତାହାର ଅନ୍ୱେଷଣରେ ଚିରାଚରିତତା ବର୍ଜନ କରି 'କୁଡ଼ିଆଛଡ଼ା' ହେବ, ନିଶ୍ଚିତ ନିରାପତ୍ତିକୁ ଅବହେଳା କରି ବିପଦାରଣ୍ୟକୁ ଦୁଃସାହସିକ ଯାତ୍ରା କରିବ, ଦୁଃଖ ନିର୍ଯ୍ୟାତନାର ଶୋକାକୁଳ ଅଶୋକବନରେ ତଥାପି ହୃଦୟକୁ ଧୈର୍ଯ୍ୟ ଧାରଣକରି ବଞ୍ଚିବାକୁ ହେବ । ବୁଝିବାକୁ ହେବ, ସୁନାହରିଣ ମିଳେ ନାହିଁ । ଯାହା ମିଳେ—ତାହା ମାୟାବୀ ପ୍ରଲୋଭନ; ସେ ପ୍ରଲୋଭନ ଅସୁଖୀ ମାୟା ହେଉ, ମୋହିନୀ ମାୟା ହେଉ କି ବିଷ୍ଣୁ ମାୟା ହେଉ ମାୟାର ଛଳନା ନ ଥିଲେ ପୃଥିବୀର ଜୀବନଯାତ୍ରା ଯେ ସ୍ଥାଣୁ ରହିଯାନ୍ତା ।

ମାୟାକୁ ଛୁଇଁବାର, ପାଇବାର ପ୍ରଲୋଭନ ଭିତରେ ତାର ରହସ୍ୟ ଭେଦକରି ମାୟାମୁକ୍ତ ହେବାର ସୂତ୍ର ସେ କପରି ଆବିଷ୍କାର କରନ୍ତା ? ବିଷ୍ଣୁମାୟାର ସମ୍ମୋହନକୁ ଭେଦ ନ କରି କିଏ ବୈଷ୍ଣବ ହୋଇପାରିବ ?

ସୁନାହରିଣ ନଥିଲେ ହୁଏତ ସୀତାହରଣ ହୋଇନଥାନ୍ତା । ମାତ୍ର ରାବଣ—ମରଣ ହୋଇନଥିଲେ କଣ ରାମାୟଣ ହୋଇପାରିଥାନ୍ତା ? ସୁନାହରିଣ ଯେ ସୀତାର ଜୟନ୍ତ, ପୃଥିବୀର ଜୟନ୍ତ ।

ମାରୀଚର ମୃତ୍ୟୁ ଅଛି । ମାୟାର ଉଚ୍ଛେଦ ଅଛି । ମାତ୍ର ସୁନାହରିଣଟି ଧରିହେଇନାହିଁ । ସୁନାହରିଣ ପାଇଁ ମଣିଷ ମନର ଆକର୍ଷଣର ଶେଷ ଆସିନାହିଁ ।

ଏ ପୃଥିବୀ ନିର୍ବୋଧ, ଅପରିଣାମଦର୍ଶୀ, ଅଚତୁର—ସବୁ ପରିଣାମର ଶେଷକୁ ଯେହେତୁ ଆସ୍ପୃହା କରୁଛି, ସବୁ ଅବବୋଧର ଅଜ୍ଞାତକୁ ଯେହେତୁ ସମ୍ବୋଧନ କରୁଛି । ସବୁ ଅସମ୍ଭବକୁ ଯେହେତୁ ସମ୍ଭାବନାର ପ୍ରତିଶ୍ରୁତିରୂପେ ଲୋଡ଼ୁଛି !

ସୁନାହରିଣ ଯେ ପୃଥିବୀର ଚିର ଅନ୍ୱେଷିତ ଭବିତବ୍ୟ !!!



# ସୂଚ୍ୟଗ୍ର ମେଦିନୀ

ସୂଚ୍ୟଗ୍ର ମେଦିନୀ ।

ସୂଚ୍ୟଗ୍ର ମେଦିନୀ ପାଇଁ ପୃଥ୍ୱୀ ଜଳିଯାଏ ।

ସମୁଦ୍ରରେ ନିଆଁ, ପବନରେ ଧୂଆଁ, ସୂଚ୍ୟଗ୍ର ମେଦିନୀ ପାଖେ ସାରା ସୃଷ୍ଟି ବନ୍ଧା ପଡ଼ିଥାଏ । ରକ୍ତନଦୀଟିଏ ଗଢ଼ି ଏକା ଏକା ତା ଗର୍ଭରେ ବୁଡ଼ିମାରି ମରିବାକୁ ହୁଏ ।

ସୂଚ୍ୟଗ୍ର ମେଦିନୀଟି କରଗତ ନ ହେଲେ ସସାଗରା ଧରାର ରାଜମୁକୁଟ ପିନ୍ଧିହୁଏ ନାହିଁ । ଅଥଚ ସେତିକ ଭୂମି ଆଙ୍ଗୁଳିରୁ ବାରବାର ଖସି ଚାଲିଥାଏ ।

ସୂଚ୍ୟଗ୍ର ମେଦିନୀ ବଞ୍ଚିବା ଓ ମରିବାର ଉଦଗ୍ର ପିପାସାଟିଏ । ଜୀବନ ଓ ମରଣର ସବୁ ସ୍ପର୍ଶରେଖା ସେ ବିନ୍ଦୁରେ ପ୍ରଶ୍ନ ହୋଇ ଉଭାହୋଇଯାଏ । ସୂଚ୍ୟଗ୍ର ମେଦିନୀ ପରେ ଏକାଗ୍ର ଜୀବନ ମରଣକୁ ହାତତାଳି ଦିଏ ।

ଲେଲୁପ ରକ୍ତରେଖାର ଗୃହାଣୀରେ ଧରଣୀ ରକ୍ତାକ୍ତ ହୁଏ । ନେଳିଆ ଆକାଶ ଦେହ ନାଲି ପଡ଼ିଯାଏ । କ୍ରୋଧିତ ଦେହକୋଷର ରୋଷ-ଦୀପ୍ତ ଉତ୍ତାପରେ ତପ୍ତ ଅନ୍ତରୀକ୍ଷ—ନାଲି ନିଆଁ ଓ କଳାଧୂଆଁର ବିବର୍ଣ୍ଣ ଚନ୍ଦ୍ରାତପଟିଏ । ପୃଥିବୀ··· ମଲା ଚଢ଼େଇର ଦେହଗାରରେ ଅଙ୍କା ଅବାକ୍ ବିମୂଢ଼ ବିବଶ ସିଲହଟ୍ଟିଏ ।

ବହ୍ନିମାନ ହୁତାଶନ, ପ୍ରଜ୍ୱଳିତ ଦାବାନଳ । ପୃଥିବୀର ଏ ପ୍ରାନ୍ତ ସେ ପ୍ରାନ୍ତ ଚଟସ୍ୱୀନ ସ୍ରୋତମଯ୍ୟ ଆକୁଳତାର ଧାର । ବାଲିର ଉତ୍ତାପ ଆଉ ଆକାଶର ତାତି, ଗଛର ଦୀର୍ଘଶ୍ୱାସ ଆଉ ବନର ଆର୍ତ୍ତି ଏକାକାର ।

ସୂଚ୍ୟଗ୍ର ମେଦିନୀଟି ଖାଲି ମେଦିନୀ ନୁହେଁ, କାଳାନ୍ତରର ଆଶା ଅଭିଳାଷ ସମ୍ଭାବନାମାନଙ୍କର ସ୍ପର୍ଦ୍ଧିତ ଅଭିମାନ ଓ ଅହଂକାରମାନଙ୍କର ସ୍ପନ୍ଦନରେ ପରିସ୍ପନ୍ଦିତ ମାଟି—ନିମିଷକେ ଗୋଟାଏ ଶ୍ମଶାନ ସ୍ତୁପ । କିଏ ଜିତେ କିଏ ହାରେ, କବଳି ମୁଖ ବିଶ୍ୱଗ୍ରାସ କରେ । କିଏ ପାଏ କିଏ ହରାଏ । ନଥିପତ୍ରରେ

ଲେଖାରୁନଦି ମରଣର ନିଭୃଷିତ । ଘାତକତାର ଇତିହାସରେ ଯୋଗବିୟୋଗର ଇତିବୃତ୍ତି ।

ବାରବାର ମାଟି ପାଖେ ହାରୁଥିବା ମଣିଷ, ବାରବାର ମୃତ୍ୟୁ ପାଦେ ହାରୁଥିବା ଜୀବନ, ସୁନ୍ଦରର ସ୍ୱପ୍ନକୁ, ପ୍ରେମର ସ୍ୱପ୍ନକୁ, ଶିଶୁର ସ୍ୱପ୍ନକୁ ସୂଚ୍ୟଗ୍ର ମେଦିନୀର ଶ୍ମଶାନଘାଟରେ ଜଳାଇ ଦେଉଥିବା ଜୀବନ କେଉଁ ଜୟଢୋଳ ବାଜି ମଣିଷର ପରାଜୟ ଚିହ୍ନକୁ ଲୁଚାଇବ ? କେଉଁ ଶୁଭ୍ର ଗନ୍ଧ ଗୌରବର ଉତ୍ତରୀରେ କଳଙ୍କିତ ଦାଗ ପୋଛିବ ? କେଉଁ ଆଖିପାଣିରେ ମରଣର କଳାଚିହ୍ନକୁ ଲିଭାଇବ ?

କିଏ ଜିତେ, କିଏ ହାରେ ? ମହାକାଳ ବକ୍ଷରେ ସୃଷ୍ଟିଥିବାଇ ମଣିଷ ଏ ଗୋଟାଏ ମହାଯନ୍ତ୍ରର କ୍ଳେଶ ଉଠାଇଥିବା ଗୁଣ୍ଡ । ଥମକିଯାଏ ସୃଷ୍ଟିର ଜୟଯାତ୍ରାର ପଦ । ନିଜଠାରୁ ନିଜଭାଇକୁ ବଡ଼ କରି ଦେଖି ଆସୁଥିବା ସେ ଗୁଣର ବିସ୍ତାରରେ ସବୁ ଆଲୁଅକୁ ଗ୍ରାସ କରିବାକୁ ବ୍ୟଗ୍ର ହୋଇ ଉଠୁଥିବା ଉଦଗ୍ରତାଟି କେବେ ବି ମଣିଷ ପାଇଁ ରାହୁଗ୍ରାସହୀନ ପୂର୍ଣ୍ଣିମାଟିଏ ଗଢ଼ିହୁଏ ନାହିଁ ।

ବିଡ଼ମ୍ବିତ ମଣିଷର ଭାଗ୍ୟ । ପୃଥିବୀର ସବୁ ଅଜ୍ଞାତ ଭବିଷ୍ୟତକୁ ମୁହୂର୍ତ୍ତକେ ଜଳାଇ ଦେଉଥିବା ବର୍ତ୍ତମାନଟି ଉଭା ଯେ ସୂଚ୍ୟଗ୍ର ମେଦିନୀ ପଟରେ, ସେ ଏକ ଲେଲିହାନ ଶିଖା, ଅକରୁଣ, ଅକାରଣ—ସବୁ ସୁକୁମାରତାକୁ ପରିହାସ କରେ ।

ଏଠି କେହି ବୀର ବା ଭୀରୁ ନୁହନ୍ତି । କେହି ଦେବ ବା ଦାନବ ନୁହନ୍ତି । କେହି ନୁହନ୍ତି କୌରବ ପାଣ୍ଡବ । ବୀର ସୁର ଧନୁର୍ଦ୍ଧର ବୋଲି ନିଜ ପାଖେ ନିଜକୁ ହିଁ ଚିହ୍ନାଇବାକୁ ଏକାନ୍ତ ସ୍ପର୍ଦ୍ଧିତ ସବୁ ଆସ୍ଫାଳନ । ଏ ସୂଚ୍ୟଗ୍ର ମେଦିନୀରେ ଧ୍ୱସ୍ତ ରଥଚକ୍ର ତଳେ ଭଗ୍ନଜାନୁ ଅଧିରଥ-ସୁତା ସବୁ ସ୍ଫୂର୍ତ୍ତି ଅକାଳ ବସନ୍ତ ।

ପ୍ରତ୍ୟେକ ଏକ ଏକ କ୍ଷୁଦ୍ର ଅଗ୍ନିପ୍ରଭ ସ୍ଫୋଟ । କେବଳ ନିଜର ଶବ୍ଦଟିଏ ଶୁଣିବା ପାଇଁ, ନିଜ ଆଲୁଅରେ ନିଜେ ମୁହୂର୍ତ୍ତେ ଚମକିତ ହେବାପାଇଁ ପରସ୍ପର ସହ ଧକ୍କା ଖାଇବାର ଆୟୋଜନ-ମଞ୍ଚ ।

# ସୁବର୍ଣ୍ଣ ରାଜ୍ୟ

ଜୀବନ ପାଇଁ ଗୋଟାଏ ଅପହଞ୍ଚ ସୁବର୍ଣ୍ଣପୁର* ଏଲଡ଼ୋରାଡ଼ୋ ଅଛି । ସେ ସ୍ୱର୍ଣ୍ଣରାଜ୍ୟର ସନ୍ଧାନ କେତେ ଭାବେ କରାଯାଇଥାଏ । କେତେ ରାସ୍ତା ଖୋଜା ଯାଇଥାଏ । ମନ ପ୍ରାଣ ଦେହର ଆଧାରରେ, କଳ୍ପନା, ଅନୁଭବ, ଆବେଗର ସ୍ତରରେ, ବିଶ୍ୱାସର ବିମର୍ଷର କେତେ ବାଟରେ ତାର ଅନ୍ୱେଷଣ କରାଯାଏ । ଆତ୍ମୀୟତା, ବନ୍ଧୁତ୍ୱ, ପ୍ରେମ, ଯଶ, ସମ୍ମାନ, କ୍ଷମତା, ଧନ, କାମ, ଧର୍ମ ଏପରିକି ମୋକ୍ଷ—ବହୁ ରୂପରେ ତାକୁ ପାଇବାକୁ ଚେଷ୍ଟା କରାଯାଏ । ତଥାପି ସେ ରାଜ୍ୟଟି ଅପହଞ୍ଚ ରହିଯାଏ । ସୁବର୍ଣ୍ଣ-ତୃଷା ମେଣ୍ଟେ ନାହିଁ । ସ୍ୱର୍ଣ୍ଣାଭିଳାଷ ଚରିତାର୍ଥ ହୁଏ ନାହିଁ ।

ସେ ସୁନାକୁ ହାତରେ ମୁଠାଇ ନଜର କରି ହେବ ନାହିଁ । ଅଂଗରେ ସଜାଇ ଭୂଷଣ କରିହେବ ନାହିଁ । ସେ ସୁନାରେ କିଣାବିକା ଚାଲିବ ନାହିଁ । ହାଟବଜାର ଦୋକାନ ସଉଦାର ବାହାରେ ଯେହେତୁ ତାର ସାମ୍ରାଜ୍ୟ, ଏ ପୃଥିବୀରେ ତାକୁ ଖୋଜିବାରେ ତେଣୁ ଦିନ ସରିଯାଏ । ହୃଦୟର ଅନ୍ଧଗଳିରେ ତା ପାଇଁ କେବଳ ଏକମୂହାଁ ଗୁଳିବାକୁ ହୋଇଥାଏ । ଅନ୍ଧାରି ସୁଡ଼ଙ୍ଗର ଶେଷରେ ସେ ଅଛି ବୋଲି ଶୁଣାଇ ଦିଆଯାଇଥାଏ । ମାତ୍ର ସୁଡ଼ଙ୍ଗର ଶେଷ ଅଛି କି ନା ଜଣା ନ ଥାଏ । ସେ ଶେଷର ସମ୍ବାଦ ନା ଜ୍ଞାନ ଦେଇପାରେ, ନା ବୁଦ୍ଧି ଆୟତ୍ତ କରିପାରେ, ନା ତପସ୍ୟା ସିଦ୍ଧ କରିପାରେ । ଯୋଗୀ ଭୋଗୀ ଉଭୟଙ୍କ ପାଇଁ ସେ ଏକ ବିଚିତ୍ର ରହସ୍ୟ ବସ୍ତୁ । ସାଧକ ତପସ୍ୱୀ, ମରମୀ ପ୍ରେମୀ ତା ପାଇଁ ଯେଭଳି ବ୍ୟାକୁଳ, କବି ଶିଳ୍ପୀ ସୁରକାର ତାକୁ ଖୋଜି ହେବାରେ ସେଭଳି ତନ୍ମୟ । ଆଉ ସଂସାରୀ ପାଇଁ ସଂସାରର ସବୁ ନାଟର ସେଇ ସୂତ୍ରଧର ।

ତାକୁ କେହି ନାହିଁ କହିଦେଇପାରେ ନାହିଁ । ଧରାଇ ଦେବାର ସାହସ କରିପାରେ ନାହିଁ । ମୁହୂର୍ତ୍ତଟେ ତାକୁ ଛୁଇଁ ହୁଏ ନାହିଁ । ଅଥଚ ସାରା ଜୀବନ ମୁହୂର୍ତ୍ତରୁ ମୁହୂର୍ତ୍ତ ତାରି ପାଇଁ ଡେଇଁ ଯିବାକୁ ହୁଏ । ଦେହର ଶକ୍ତି ସାମର୍ଥ୍ୟ

---

* ଦକ୍ଷିଣ ଆମେରିକାରେ କଳ୍ପିତ ସ୍ୱର୍ଣ୍ଣରାଜ୍ୟ ।

ସରିଯାଏ । ପ୍ରାଣ ତାର ଉଲ୍ଲାସ ଉନ୍ମାଦନା, ସ୍ଫୂର୍ତ୍ତି ପ୍ରତୀକ୍ଷା ଓ ଉଦ୍‌ବେଳ-ଆକୁଳ ଅସୁମାରି ପ୍ରେମଗୀତ ରଚନା କରି ଲକ୍ଷ ଲକ୍ଷ ଫୁଲ ଫୁଟାଇ ଆକାଶ ପାତାଳ ମନ୍ଥି ମନ୍ଥି ଥକିଯାଏ ସିନା, ତାର ସନ୍ଧାନ ପାଏ ନାହିଁ । କ୍ଷୋଭ ଓ ଅବଶୋଷ ମାତ୍ରକ ସମ୍ବଳ ହୁଏ । ତଥାପି ଜନ୍ମାନ୍ତରକୁ ଚହଁରିବାର ଆଶାରେ ଆପଣାକୁ ଭୁଲାଇରଖି ନକ୍ଷତ୍ରମାଳାରେ ସାନ୍ତ୍ୱନାର ପ୍ରତିଶ୍ରୁତି ଖୋଜେ ।

ମନ ନଜର ଉଡ଼ାଣିଆ ବିସ୍ତୃତିରେ ଅଂହକାର କରିବସେ 'ମନର ମୂଳେ ଏ ଜଗତ' । ସେ ଚାହିଁଲେ ସବୁ କିଛି 'ସୁନା' ହୋଇଯିବ । ନାସ୍ତି କରିଦେଲେ ସୁବର୍ଣ୍ଣପୁର ଅସ୍ତିତ୍ୱହୀନ ହୋଇଯିବ । ସ୍ୱର୍ଣ୍ଣ-ଅଭିଳାଷକୁ ସେ ସୁଖର ପରିଭାଷା ଦିଏ । ଲୁଚକାଳି ଖେଳର ଆୟୋଜନରେ ଅଦୃଷ୍ଟ ସଙ୍ଗେ ସଙ୍ଗେ ସଂପର୍କ ବାନ୍ଧେ । ବୁଝାଇ ବସେ, ନିଜକୁ ସୁଖୀ ବିଚାରିଲେ ହିଁ ସୁଖ, ତାଠାରୁ ଆଉ କିଛି ବୃହତ୍ତର ପ୍ରାପ୍ତି ନାହିଁ । ମାତ୍ର ମନର ଏ ସମସ୍ତ ଚତୁରତା, କୌଶଳକୁ ଆଡ଼େଇ ଦେଇ ତଥାପି ଭିତରେ କେହି ଯେମିତି ତା ବୁଝିବାରେ ଅଟଳ ରହିଥାଏ ଯେ ସେ ସୁଖ ଖୋଜୁ ନାହିଁ—ନା ବସ୍ତୁ-ରୂପରେ ନା ଭାବ-ଭୂମିରେ । ସୁଖତ ସହଜଲବ୍ଧ; ଭାବକୁ ଦ୍ରବ୍ୟ ସଙ୍ଗେ ଏକାତ୍ମ କରିଦେଲେ, ଉପସ୍ଥିତ ମୁହୂର୍ତ୍ତ, ସମ୍ମୁଖସ୍ଥ ଜୀବନକୁ ସୁଖ ବୋଲି ଭାବନେଲେ ହିଁ ସମସ୍ୟା ଶେଷ । କିମ୍ବା ସୁଖ ବୋଲି କିଛି ନାହିଁ, ଏମିତି ଶେଷ ନିଷ୍ପତ୍ତି ନେଇଯିବାଠା ସମସ୍ୟାରୁ ମଧ୍ୟ ଶେଷ ନିଷ୍କୃତି । ମାତ୍ର ଜୀବନ କଣ ସତରେ ସୁଖ ଖୋଜେ ? ଯେହେତୁ ଜୀବନ ପାଇଁ ସୁଖ ସର୍ବଶେଷ ଶ୍ରେୟ ନୁହେଁ, ପ୍ରାପ୍ତିର ସର୍ବୋତ୍ତମ ରୂପ ନୁହେଁ, ସୁଖ ନ ହେଲେ ବି ତାର ଚଳେ । ଦୁଃଖ ସହ ଆତ୍ମୀୟତା କରି ଘରବାନ୍ଧି ବଞ୍ଚିବାର କୌଶଳ କୋଉ ତାକୁ ଜଣାନାହିଁ ଯେ ! ଆଉ ପୁଣି ଦୁଃଖଭଳି ଅତି ପରିଚିତ ନିର୍ଭରଶୀଳ ଆତ୍ମୀୟଟିକୁ ସେ ସୁଖଭଳି ବାଁଉଦାସୀନ କ୍ଷଣିକ ଅତିଥି ସହ କାହିଁକି ବିନିମୟ କରିବାକୁ ଯିବ ?

ଜୀବନ ଜାଣି ଜାଣି ସୁଖର ସବୁଜ ଘାସ ଗାଲିଚାକୁ ଆଡ଼େଇ ଦେଇ ଦୁଃଖର କଣ୍ଟାବଣରେ ପଶେ । ଜାଣେ, ସୁଖ ମରୀଚିକା । ଦୁଃଖ ମରୁଭୂମି ହୋଇପାରେ; ମାତ୍ର ଏକ ନିଶ୍ଚିତ ମରୁଭୂମି ଯେଉଁଠି ମରୁଦ୍ୟାନ ଥାଉ ନ ଥାଉ ଜଳାଶ୍ରୟର ଭ୍ରାନ୍ତି ନାହିଁ ।

ମରୁଭୂମିକୁ କେହି ସମୁଦ୍ର ଖୋଜଯାଏ ନାହିଁ । ତଥାପି ମରୁଯାତ୍ରୀର ଅଭାବ ହୁଏ ନାହିଁ । ଜୀବନ ମରୀଚିକା ପାଖେ ଆତ୍ମସମର୍ପଣ କରି ନ ପାରେ, ମରୁଦ୍ୟାନ ସନ୍ଧାନ କରିବ ହିଁ କରିବ । ମରୁଦ୍ୟାନ ହିଁ ତ ମରୁଭୂମିର ମଧୁରତମ ଆକର୍ଷଣ ।

ଏ ଅନ୍ୱେଷଣ ଶେଷହୀନ । ମରୁଝରର ପାଖେ ପହଞ୍ଚିଯିବାର ଅନୁଭବ ଜୀବନ ପାଇଁ ହୁଏତ ସମ୍ଭବ ହୁଏ ନାହିଁ । କେତେବେଳେ ବି ମନେହୁଏ ନାହିଁ ଯେ ଏଇ ଶେଷ, ଆଉ କିଛି ପାଇବାକୁ ବାକି ନାହିଁ ।

ଏ କଥା ନୁହେଁ ଯେ ଜୀବନ ସତରେ କେବେ କିଏ ପାଏ ନାହିଁ । ମାତ୍ର ପ୍ରାପ୍ତିର ଜଗତରେ ସେ କେବେ ବି ପରିତୃପ୍ତ ହୁଏ ନାହିଁ । ସବୁବେଳେ ମନେହୁଏ ଜଗତଠାରୁ ଜୀବନ ବଡ଼; ଜୀବନଠାରୁ ବ୍ୟାପକ ତାର ଅନୁଭବ । ଅନୁଭବର ସେ ବିଶାଳ ରାଜ୍ୟକୁ ସବୁ ମାର୍ଗ କିନ୍ତୁ କେବଳ ଅଭାବର । ଭାବ କଣ ସେ ହୁଏତ ଜାଣେ ନାହିଁ । ତାର ସବୁ ଅଭାବ ଯେ ତଥାପି ପୂରଣ ହୋଇ-ନାହିଁ ବୋଲି ଲାଗେ ସେଇ ତଥାପି ପାଖରେ ସବୁ ଭାବର ଗୋପନ ରହସ୍ୟ ଯେମିତି ଛନ୍ଦା ପଡ଼ିଥାଏ । ଅଭାବର ଗଳିରାସ୍ତା ଦେଇ ଭାବର ଅରଣ୍ୟ ଭିତରକୁ ପ୍ରବେଶ କରୁଥିବା ବେଳେ ବିଚିତ୍ର ଅନୁଭବମାନ ମୁକୁଳିପଡନ୍ତି । ପୁଲକ, ବିସ୍ମୟ, ଉଦ୍‌ବେଗ, ଆକୁଳତା ପ୍ରଭୃତିର ଆବେଗମାନ ବିହ୍ୱଳ କରିଦିଅନ୍ତି । ତଥାପି ଠିକ୍ ମନେହୁଏ ଭାବ ବିନୋଦିଆ ଧରାଦେଇ ନାହିଁ । ଶିଆଳି ଲଟା ଫାଙ୍କରୁ ଲୋଭମାୟୁ ଆକର୍ଷଣଟିଏ ନାଚି ଉଠୁଛି ।

ଧରିବାର ମୁହୂର୍ତ୍ତରେ ରଙ୍ଗାପାଦଟି ରକ୍ତଧାର ପାଲଟିଯାଏ ବୋଧେ । ବୋହୂକୁ ଛୁଇଁ ଦେଲେ ତ ଖେଳ ସରିଯାଏ । ଖେଳର ବିନୋଦରୁ ବ୍ୟକ୍ତି ଆପଣାକୁ ମୁକ୍ତ ଦେବାକୁ ଚାହେଁନାହିଁ ବୋଲି ବୋଧହୁଏ ପାଇବାଠାରୁ ଖୋଜି-ବାକୁ ପ୍ରିୟତର ମନେକରେ ।

ସତରେ ଯଦି ଭାବର ସେ ଏଲଡ଼ୋରାଡୋ—ସେ ସ୍ୱର୍ଣ୍ଣ ଉପତ୍ୟକାରେ କେବେ ବ୍ୟକ୍ତି ପହଞ୍ଚିଯାନ୍ତା ! ସେ ପହଞ୍ଚିବାର ପ୍ରମାଣ କିପରି ଖୋଜିବାକୁ ହୁଅନ୍ତା ? ସେ ରାଜ୍ୟରେ ସୁନା କେବଳ ଧାତୁ ନୁହେଁ, ତାର ଆକାଶ ବତାସର ଜ୍ୟୋତି ହୋଇ ପ୍ରସରିଯାନ୍ତା । ଚାରିଆଡ଼ ସୁନାରଙ୍ଗ, ସୁନାପାଣି, ସୁନାବାଲି,

ସୁନାର ଆକାଶ ଆଉ ଚନ୍ଦ୍ର ସୂର୍ଯ୍ୟଙ୍କର ସୁନାକିରଣ, ଗଛ ପତ୍ର ଫୁଲ ଫଳ ଏପରିକି ନିଜ ଦେହର ରଙ୍ଗବି—ସବୁ ସ୍ୱର୍ଣ୍ଣାଭ ।

ଅନ୍ତରର ଗଭୀରାନୁଭବଟି ମଧ୍ୟ ଏକ ଅପୂର୍ବ ସ୍ୱର୍ଣ୍ଣୋଜ୍ଜ୍ୱଳ ଦ୍ୟୁତି ଆଭାସିତ । ସେ କନକବର୍ଣ୍ଣା ଧରଣୀରେ ପହଞ୍ଚିଛି ବୋଲି ଆଉ କାହାଠାରୁ ଶୁଣିବାର ଲୋଡ଼ା ପଡ଼ନ୍ତା ନାହିଁ, ଏକ ସ୍ୱରଣ୍ଣୁପୁ ସତ୍ୟ ସମ୍ମୁଖରେ ବିହ୍ୱଳିତ ପରିସ୍ଥିତିଟିଏ ଚକିତ ସ୍ତବ୍ଧ ରହିଯାନ୍ତା ।

ସେଇ ସ୍ୱର୍ଣ୍ଣିମ ସ୍ନିଗ୍ଧ ନବାରୁଣଟି ପାଇଁ ଜନ୍ମ ଜନ୍ମର ଏ ଅଭିସାର ଯାତ୍ରା ? କନକ-ଉପତ୍ୟକାକୁ ଏଇ ଅରଣ୍ୟ-ଅଭିସାର ?





# ତ୍ରି-ଜଗତ

ଜୀବନର ଜଗତ ସହ ପ୍ରଥମ ପରିଚୟ ଘଟେ ପ୍ରତ୍ୟକ୍ଷତାର ଭୂମିରେ, ବସ୍ତୁ-ଜଗତ ସହ । ଚେତନାର ବିକାଶକ୍ରମରେ ସର୍ବ ପ୍ରଥମେ ଭେଟେ ବାସ୍ତବ-ତାକୁ । ତାହା ପ୍ରତ୍ୟକ୍ଷ ଜାଣିବା । ଜନନୀର ସ୍ପର୍ଶ, ଶଯ୍ୟାର ସ୍ପର୍ଶ, ରଙ୍ଗର ଆଧାର, ଶବ୍ଦର ନିନାଦ ପ୍ରତି ଇନ୍ଦ୍ରିୟମାନେ ସଜାଗ ହୁଅନ୍ତି । ବୃଦ୍ଧି ବସନ୍ତ—ଏଇ ଜଗତ, ରୂପ ରସ ଶବ୍ଦର ଜଗତ, ଦେହର ଜଗତ, ଇନ୍ଦ୍ରିୟ-ସଂବେଦୀ ଜଗତ । ଏ ଜଗତକୁ ଜାଣିବା ପ୍ରତ୍ୟୁତ୍ତର କରିବା, ସବୁର ମାଧ୍ୟମ ଏହି ଦେହ, ଏ ଇନ୍ଦ୍ରିୟ । ଦେହଠାରୁ ବଳି, ଭୂମିଠାରୁ ବଳି ପ୍ରତ୍ୟକ୍ଷତା ଆଉ କିଛି ନାହିଁ ।

ଏ ଭୂମିର ସତ୍ୟ—ମାଟିର ସତ୍ୟ !

ଜୀବନର ଜଗତ ସମ୍ବନ୍ଧରେ ପ୍ରଥମ ପ୍ରାପ୍ତ ସତ୍ୟ—ପ୍ରମୂର୍ତ୍ତତା । ପ୍ରତ୍ୟକ୍ଷତାର ବାହାରେ ଯାହା ଥାଏ—ସେଥିପାଇଁ ବିସ୍ମୟ, ଭୟ, କୌତୁହଳ ଓ ପ୍ରଶ୍ନ ।

ସବୁ ଅଜଣା ପାଇଁ ଆଦ୍ୟ ପ୍ରଶ୍ନ (ଯେ) କ'ଣ ?—ଯାହାର ନିରସନ ପାଇଁ ଲୋଡ଼ା ମୁଠାଏ ପ୍ରମାଣର ଚିହ୍ନ ।

ଏ ଜଗତ ଶବ୍ଦର ଜଗତ । ଅର୍ଥମାନେ ଅପରିଚ୍ଛନ୍ନ । ଭାବମାନେ ଅପରିସ୍ଫୁଟ । ଅଭିଧାନରେ ହିଁ ଭାବ ଓ ଅର୍ଥର ଯାବତୀୟ ପ୍ରକାଶ—ପ୍ରୟାସ ।

ଏ ଜଗତ 'ନିଜ'ର ଜଗତ । ନିଜଠାରେ ଆଚ୍ଛନ୍ନ-ଆତ୍ମମଗ୍ନ । ନିଜ ଅନୁଭବବେଦ୍ୟ ଏ ଜଗତରେ ନିଜେ ନିଜ ପାଇଁ, ନିଜ ବାହାରର ସମସ୍ତେ ବି ସେଇ ନିଜପାଇଁ । ନିଜର ସ୍ୱୀକୃତି ପ୍ରାପ୍ତିରେ ଖୁସି, ଅସ୍ୱୀକୃତିରେ କ୍ଷୋଭ । ସର୍ବ ଏଠି ଶିଶୁ—ନିଜ ରାଜ୍ୟରେ ସାର୍ବଭୌମ ।

ଏ ଜଗତ 'ଏକ'ର ଜଗତ । ଏକମାତ୍ର ଏକ । ଭଲ ନାହିଁ; ମନ୍ଦ ନାହିଁ, ଠିକ୍ ନାହିଁ, ଭୁଲ ନାହିଁ, ମିତ ନାହିଁ, ଅମିତ ନାହିଁ—ଦ୍ୱନ୍ଦ୍ୱ ହିଁ ନାହିଁ । ସବୁ ସାଧାରଣ ଭାବେ ସ୍ୱାଭାବିକ୍, ସହଜ;—ଜୀବନ ଜନ୍ମ ହେବାର ସହଜ କ୍ରିୟା

ଭଳି । ସ୍ୱତଃସ୍ଫୂର୍ତ୍ତ, ସ୍ୱତଃସିଦ୍ଧ ଏଇ ଜୀବନ ଗିରିଶଯ୍ୟାରେ ନବୋଦ୍‌ଗତ କଳ-ତାନରତ ନିର୍ଝରର ଭଳି ।

କ୍ରମଶଃ ନିଜ ଭିତରୁ ସଞ୍ଚାର ଯାତ୍ରା ବହିର୍ଜଗତ ଅଭିମୁଖୀ ହୁଏ । ଅନ୍ୟ-ମାନଙ୍କ ସମ୍ପର୍କରେ ସଚେତନତା ଆସେ । ନିଜ ଭିତରୁ ବାହାରି ଆସୁଥିବା ସୁନିଶ୍ଚିତ ଧୀର ପଦର ଯାତ୍ରା ଆୟୋଜନ ହଠାତ୍ ଯେପରି ପ୍ରବଳ ଧକ୍‌କା ଖାଏ—ବାହାର ଚେତନାର ପ୍ରସ୍ତର-କାନ୍ଥରେ । ଥମକିଯାଏ ଜୀବନାନୁଭବର ପ୍ରବାହ, ମୁହୂର୍ତ୍ତେ ସ୍ତବ୍‌ଧତା । ଅନୁଭବରେ ଭିନ୍ନ ଏ 'କଷ୍ଟ'ର ଆଘାତକୁ ପ୍ରଶ୍ନର ବିରୋଧ 'କାହିଁକି' ?

ଜୀବନ ସହ ଆଜି ଏକ ପ୍ରଶ୍ନର ସଂଯୋଗ ଘଟେ 'କାହିଁକି' ?
ନିର୍ଝରର ଛନ୍ଦୋବଦ୍ଧ ଗତିପ୍ରବାହ ହଠାତ୍ ପଥହରାଇ ଗିରିଶିଖର-ଚ୍ୟୁତ ହୁଏ । ଧାରା ହୁଏ ପ୍ରପାତ । ଏକଧାର ହୁଏ ସହସ୍ରଧାର ।

ଖୋଲିଯାଏ ଦ୍ୱିତୀୟ ଦ୍ୱାର—ଭାବଭୂମିର । ପ୍ରତ୍ୟକ୍ଷତାରୁ ସଂଚରଣ ଘଟେ ଅପ୍ରତ୍ୟକ୍ଷତାକୁ । ବସ୍ତୁରୁ ଭାବକୁ । ରୂପରୁ ଅନୁଭବକୁ । ଶବ୍ଦରୁ ଅର୍ଥକୁ । ପ୍ରଶ୍ନ ବଦଳିଯାଏ କଣରୁ କାହିଁକିକୁ ? ଏ ଜଗତରେ ସବୁ ଯେପରି ଅସ୍ଥିର, ତରଳ, ସଂଜ୍ଞାହୀନ । ରଙ୍ଗମୟ ରୂପ ନୁହେଁ, ରଙ୍ଗଧାରାର ବହର । ଭାଷାର ସଙ୍ଗୀତ ନୁହେଁ, ଭାଷାହୀନ ସ୍ୱରାଳାପ । ଦେହର ଚଞ୍ଚଳତା ସହ ଯୋଗହୁଏ ମନର ଉଚ୍ଚାଟନ । ଇନ୍ଦ୍ରିୟର ଉପଲବ୍‌ଧିକୁ ଘେରିଯାଏ ଭାବାନୁ-ଭୂତିର ପ୍ରହେଳିକା । ସବୁ ଜାଣିବାକୁ, ଛୁଇଁବାକୁ, ବୁଝିବାକୁ ଉଚ୍ଚାଟ ସେ ପ୍ରଶ୍ନ-ଚେତନ ମନ ।

ଯେମିତି ରୁଦ୍ଧ-ଦ୍ୱାର ଭାଙ୍ଗିପଡ଼େ । ପକ୍ଷ କଅଁଳି ଉଠେ । ମାଟିର ବନ୍ଧନ ଶିଥିଳ ହୋଇଯାଏ, ଆଉ ଆକାଶର ବକ୍ଷ ପ୍ରସାରିତ ହୋଇଯାଏ । ଯେମିତି ଦେହର ବୋଝ ଖସିଯାଏ, ମନର ପାଲରେ ସେ ଯେମିତିକି ସୂତାଖିଏ ହୋଇ ଉଡ଼ିଯାଇପାରେ ।

ସବୁ ଯେମିତି ବଦଳିଯାଏ । ଦେହ ପ୍ରାଣମନ ଯେମିତି ନିଜର ପ୍ରତ୍ୟକ୍ଷତାକୁ ବିସ୍ମୃତ ହୋଇଯାଆନ୍ତି । ଆଖି ତାର ସମ୍ମୁଖକୁ ଦେଖେ ନାହିଁ । ଅଦେଖା ଜଗତରେ ଧନ୍ଦି ହୁଏ । କାନ ପୃଥିବୀର ଗୀତ ଶୁଣେନାହିଁ । ଅପାର୍ଥିବର

ସ୍ୱରରେ ସମ୍ମୋହିତ ହୁଏ । ଦେହ ନିଜକୁ ଛୁଇଁପାରେ ନାହିଁ । ଅଦେଖାର ସ୍ପର୍ଶାକୁଳ ହୁଏ । ମନେହୁଏ, ପ୍ରତ୍ୟକ୍ଷ, ପ୍ରମୂର୍ତ୍ତ, ସ୍ଥିର ବୋଧହୁଏ କିଛି ନାହିଁ ।

ଏ ଦ୍ୱିତୀୟ ଭୂମିର ସତ୍ୟ ଆକାଶ ।

ଏ ଯେମିତି ଏକ ବିରାଟ ସ୍ୱ-ବିରୋଧୀ ରାଜ୍ୟ । ଏଠି ଏକ ସହ ଅପରର, ଏକ ସହ ଅନେକର ଦ୍ୱନ୍ଦ୍ୱ । ଦେହର ସବୁ ପ୍ରତିକ୍ରିୟାକୁ ମନର ଭାବନା ପ୍ରଶ୍ନ କରିବ, ପ୍ରାଣର ସବୁ ଅନୁଭବକୁ ବିଶ୍ଳେଷଣ କରିବ । କେହି କାହାକୁ ନିଃସର୍ତ୍ତ ମାନିନେବେ ନାହିଁ । କାହାର ସତ୍ୟକୁ ନିଜର ବୋଲି ଗ୍ରହଣ କରିବେ ନାହିଁ । ଯେ କେବଳ ଅଛି ଆଉ ନାହିଁର ଜଗତ । ହଁ ଆଉ ନାଁର ଦୁଇପାଖିଆ ଧେରରେ ବନ୍ଧା ଏହାର ସମୁଦାୟ ଭାଗ୍ୟ । ଏଠି ଖାଲି ସୁଖ ଆଉ ଦୁଃଖର ଟଣାଟଣି । ଭଲ ଆଉ ମନ୍ଦର ବିଗ୍ରହ । ମିଛ ଓ ଅମିଛର ଦ୍ୱନ୍ଦ୍ୱ । ସବୁ ରୂପର ଶେଷରଙ୍ଗ କଳା ନ ହେଲେ ଧଳା । ସବୁବେଳେ ଉପରକୁ ଉଠିଯିବାର ଉଲ୍ଲାସ ଓ ପରେ ପରେ ତଳକୁ ଖସି ଆସିବାର ଅବସାଦ । ଅଥଚ କାହାରି ଗୋଟିକୁ ବାଦ୍‌ଦେଇ, ଅପରକୁ ଧରିନେଇ ବଞ୍ଚିବାର ଉପାୟ ନାହିଁ । ଏଠି କେହି ସ୍ୱୟଂସିଦ୍ଧ ନୁହନ୍ତି । ସବୁ ଅପର-ସିଦ୍ଧ, ଅନ୍ୟ-ସାପେକ୍ଷ । ଅପରକୁ ବାଦଦେଇ, ଅପରର ସ୍ୱୀକୃତି ବିନା ଯେମିତି କେହି ଏକକ ଭାବେ ତିଷ୍ଠି ପାରିବ ନାହିଁ ।

ଯେମିତି ସହଜ ସ୍ୱାଭାବିକ, ନିର୍ବିରୋଧ ଜୀବନଧାରାକୁ ଜଟିଳ ପ୍ରକୃତିର ଏ ଆକସ୍ମିକ ବିନ୍ଧ ବିପର୍ଯ୍ୟୟ । ଭଲ ପରି ମନ୍ଦଟାବି ସତ୍ୟ, ସୁଖ ପରି ଦୁଃଖଟାବି ନିଶ୍ଚିତ, ସତ୍ୟ ପରି ମିଥ୍ୟାଟାବି ସତ୍ତାତ୍ମକ, ଆଲୋକ ପରି ଅନ୍ଧାର ଅବିସମ୍ବାଦିତ । ଏହାକୁ ଜାଣିବା ପାଇଁ ସ୍ୱୀକାର କରିନେବା ପାଇଁ ପ୍ରକୃତି ତାର ସମଗ୍ର ଉଦଗ୍ରତାକୁ ହାବୁକା ଢେଉ କରି ଗୋଟା ପରେ ଗୋଟା ଅଜାଡ଼ି ପକାଏ । ଅସ୍ଥିର, ଆନ୍ଦୋଳିତ କରିଦିଏ । ଉଠିବା ଓ ପଡ଼ିବା, ହସିବା ଓ କାନ୍ଦିବା, ଆଶା ବିଶ୍ୱାସ ଓ ବିଫଳତା ସଂଶୟର ଦୋଳାରେ ଝୁଲି ରହିବା ଯେମିତି ଜୀବନର ପ୍ରତିରୂପ ହୋଇପଡ଼େ । ଏ ରାଜ୍ୟରେ ଜୀବନର ଶଙ୍କାକୁଳ ଗତି, ସାଧନା-ତତ୍ପର ସଂଗ୍ରାମ । ସବୁବେଳେ ବିଷଜ୍ୱାଳାର ମୂହ୍ୟମାନତା ଆଉ ଅମୃତ-ଶୀତଳତାର ଆଶ୍ୱାସନା । ଆଶା ଆଉ ବିଶ୍ୱାସର ଅନ୍ୱେଷଣରେ ଅନ୍ଧ-ଗଳିକୁ ଅମୁହାଁ ଯାତ୍ରା, ସବୁ ଅନୁଭବର ଅପସାରଣ ଦୁଇଟି ପ୍ରାନ୍ତବିନ୍ଦୁ— ହଁ ଓ ନା ।

ଦ୍ୱିତୀୟ ଭୂମିର ଦ୍ୱନ୍ଦ୍ୱ—ଅନ୍ତର୍ଦ୍ୱନ୍ଦ୍ୱ । କାହିଁକି ସୁଖ ନିଶ୍ଚେ ଦୁଃଖ ସ୍ୱପ୍ନ ଜଡ଼ିତ ? ନ୍ୟାୟକୁ ଅନ୍ୟାୟର ଏତେ ବିରୋଧ ? କଳ୍ପନା ସହ ବାସ୍ତବତାର ଏତେ ଅମେଳ ? ସବୁ କ'ଣ ଏକ ଅନିଶ୍ଚୟ ଦୋଳା ? ଉପରକୁ ଉଠିବା ନ ହେଲେ ତଳକୁ ଖସିବା ? ନିଶ୍ଚୟର ସ୍ଥିରଭୂମି ନାହିଁ ? ସ୍ଥିରତା ପାଇଁ ଚେଷ୍ଟା, ଚିରନ୍ତନ ପାଇଁ ବ୍ୟାକୁଳତା ଅଥଚ ଉଦ୍‌ବେଳ ତରଙ୍ଗର କ୍ଷଣସ୍ଥାୟୀ ମୁହୂର୍ତ୍ତର ଅସ୍ଥିର ଆଲୋଡ଼ନ ପ୍ରତିନିୟତ । ସୁନ୍ଦରକୁ ଆପ୍ରାଣ ଖୋଜୁଥିବା ପଥଧାରରେ କେବଳ ବିରୂପତାର କୁତ୍ସିତ ଆବିର୍ଭାବ ।

ପ୍ରଥମ ପୀଠର ଦ୍ୱନ୍ଦ୍ୱ ଥିଲା ବହିର୍ଦ୍ୱନ୍ଦ୍ୱ । ବାହାର ଜଗତର ପ୍ରାପ୍ତି-ଅପ୍ରାପ୍ତିର ସଂଘର୍ଷ । ଦ୍ୱିତୀୟ ଭୂମିରେ ପ୍ରାପ୍ତିର ନିଜ ରୂପ ନାହିଁ । ଅନ୍ତରର ଅଭିଳାଷଠାଇ ପ୍ରୟୋଜନର ରୂପ ନିରୂପଣ କରେ । ଏଠି ମନର ବ୍ୟାକୁଳତା ହିଁ ଅନ୍ୱେଷଣ । ପ୍ରାଣର ପରିତୃପ୍ତିରେ ପ୍ରାପ୍ତିର ଚରିତାର୍ଥତା ।

ସଂଶୟର ବାଲୁଚର ଏ ଭୂମି । ଦ୍ୱିଧା, ଅପ୍ରତ୍ୟୟର ଶୈବାଳ ଉପରେ ଅନିଶ୍ଚିତ ଶଙ୍କାକୁଳ ଜୀବନର ଗତି । 'କାହିଁକି' ସହ 'କାହିଁକି ନୁହେଁ'ର ପ୍ରଶ୍ନ ସମାନ କୁଶାଗ୍ର-ତୀକ୍ଷ୍ଣତାରେ ଉଦ୍ୟତ ।

ପ୍ରଥମ ଜଗତର ସତ୍ୟତା, ବସ୍ତୁଭୂମିର ନିବିଡ଼ ସତ୍ୟତା, ଯେମିତି ଏକ ଭ୍ରମମୟ ପ୍ରହେଳିକା ପାଲଟିଯାଏ । ପ୍ରଥମ ଭୂମିର ଗନ୍ତବ୍ୟ ଏ ଭୂମିରେ ଏକ ନିରୁଦ୍ଦେଶ୍ୟର ଅନ୍ୱେଷଣ ମାତ୍ର । ପ୍ରାପ୍ତି ସୁଖ ନାହିଁ । ପ୍ରାପ୍ୟ-ଭ୍ରମର ମରୀଚିକା ମାତ୍ର । ହାତରେ ଯାହା ବା ଧରାଦିଏ, ତାହା ପ୍ରାପ୍ତି ନୁହେଁ, ମୁଠାଏ ମୁହୂର୍ତ୍ତର ବାଲିକଣା ମାତ୍ର, ପର ମୁହୂର୍ତ୍ତରେ ଆଙ୍ଗୁଳି-ଫାଙ୍କରେ ଖସି ହାତ ତୁଚ୍ଛାକରି ମହାକାଳରେ ଲୀନ ହୋଇଯାଏ । ଏଠି ମୁହୂର୍ତ୍ତର ଅର୍ଥ ବଦଳିଯାଏ । ପ୍ରତ୍ୟେକ ମୁହୂର୍ତ୍ତ ଅପର ମୁହୂର୍ତ୍ତର ଝରଗ୍ରସ୍ତ । କୌଣସି ମୁହୂର୍ତ୍ତ ସାର୍ଥକ ନୁହନ୍ତି, ମାତ୍ର ସେମାନଙ୍କୁ ଉପେକ୍ଷାକରି ଚିରନ୍ତନତାକୁ ଚିନ୍ତା କରିହୁଏ ନାହିଁ । ଏ ଯେମିତି ଏକ ଇନ୍ଦ୍ର-ଜାଲ ରାଜ୍ୟ । ସବୁ ଏଇଠି ଅଛି ପୁଣି ନାହିଁ । ପାଇବାର ଉଲ୍ଲାସ, ଧାଇଁବାର ନିଶା ଯେମିତି ଗୋଟିଏ ପରିଣତି ଆଡ଼କୁ ମୁହାଁଇ ଥାଏ । ହାତମୁଠା ମୁକୁଳିଯାଏ । ସବୁ କିଛି ଖସି ଯିବାପାଇଁ ଯେମିତି ଧରା ଦେଇଥାଏ ।

'କାହିଁକି'ର ପ୍ରଶ୍ନାଘାତରେ ଅନୁଭବର ଜଗତ ବିଦୀର୍ଣ୍ଣ ହୁଏ । ଚେତନା ବିସ୍ତୃତ ହୁଏ । ଖୋଲିଯାଏ ଉପଲବ୍ଧିର ନବ ନବ ରୁଦ୍ଧଦ୍ୱାର । ଏ ଜଗତ

ଦେଖାଇଦିଏ ଏଠାରେ ସୁଖର ଆକର୍ଷଣ ବିପୁଳ, ଦୁଃଖର ଆଘାତ ବି ପ୍ରବଳ । ଯେହେତୁ ସୁଖ ଦୁଃଖର ଲବ୍‌ଧ ଭୂମି ନିଜ ବାହାରେ । ଭୋଗଭାଗ୍ୟକୁ ବାହାରୁ ଖୋଜା ଯାଇଥାଏ । ଅନିଭୋଗ ବି ବାହାରୁ ମିଳେ । ଭିତରର ଓ ବାହାରର ସବୁବେଳେ ଟଣାଟଣି । ନ ମିଳିବା ପର୍ଯ୍ୟନ୍ତ ସବୁ ଆକର୍ଷଣୀୟ । ପ୍ରାପ୍ତିର ଅଙ୍ଗୁଳିରେ ନ ଛୁଇଁବା ପର୍ଯ୍ୟନ୍ତ ଆକାଶର ଚନ୍ଦ୍ରମା ସୁଠାମ ସୁନ୍ଦର । ପହଞ୍ଚିବାର ପାଦତଳେ ପୋଡ଼ାଭୂଇଁ ମାତ୍ର ।

ସବୁ ଲୋଡ଼ା ଏଠି । ଯଶ, କ୍ଷମତା, ଅର୍ଥର ଭୋଗ ପଛରେ ଧାଇଁବାର ଅନ୍ଧବେଳା ଇଏ । ନିଜକୁ ନେଇ ତୃପ୍ତ ନୁହେଁ ବୋଲି ତୃପ୍ତିର ସନ୍ଧାନ ନିଜ ଭିନ୍ନ ଅନ୍ୟ ସବୁଠି । ଏଠି ସବୁ ଅପୂର୍ଣ୍ଣ, ତେଣୁ ଅପେକ୍ଷିତ ।

ମିଳିବାର ଏଠି ଗୋଟିଏ ରୂପ ମାତ୍ର, ଭାବ । ଯାହା ବସ୍ତୁରେ ମିଳେ ନାହିଁ, ଭାବରେ ତାହାର ଅଭାବ ମୋଚନ କରିହୁଏ । ଭାବ ଭୂମିରେ ଅନୁଭବର ପୂର୍ଣ୍ଣତା ମିଳିପାରିଲେ ଏ ଜଗତର ଦ୍ୱନ୍ଦ୍ୱର ସମାଧାନ କରିହୁଏ । ଏଠି କେହି ସ୍ୱ ଅର୍ଥରେ ସିଦ୍ଧ ନୁହନ୍ତି ବୋଲି ସିଦ୍ଧିର ଭିନ୍ନ ଅର୍ଥ ଲୋଡ଼ିବାକୁ ହୁଏ । ରୂପ ରୂପସିଦ୍ଧ ନୁହଁନ୍ତି ବୋଲି ତାକୁ ଅରୂପର ପ୍ରତିବାଚକତାରେ ବୁଝିବାକୁ ହୁଏ । ଶବ୍ଦ ଏଠି ସଙ୍କେତ, ଅର୍ଥ ଏଠି ବ୍ୟଞ୍ଜନା, ସବୁ ନିଜକୁ ନେଇ ଅଚରିତାର୍ଥ ବୋଲି ନିଜର ସାର୍ଥକତାକୁ ଅନ୍ୟ ଏକ ଅର୍ଥମୟତାରେ ଅନ୍ୱେଷଣ କରିଥାଆନ୍ତି ।

ପୁଷ୍ପର କୋମଳତା ଆଉ କଣ୍ଟକର ତୀବ୍ରତା ଏ ଜଗତର ଭାଗ୍ୟଲିପି । ଏଠି ଉଭୟଙ୍କୁ ସମାନ ମୂଲ୍ୟ ଦେବାକୁ ହୁଏ, ଏକ ପାଇଁ ଅପରକୁ ଅପରିହାର୍ଯ୍ୟତଃ ଗ୍ରହଣ କରିନେବାକୁ ହୁଏ । ସେଇଥିପାଇଁ ଏଠି ଫୁଲର ପେଲବତା ଓ କଣ୍ଟାର ତୀକ୍ଷ୍ଣତା ସମାନ ଭାବରେ ଦେହକୁ ଛୁଇଁଥାନ୍ତି । ଏଠି ସ୍ନେହ ପ୍ରେମକୁ ଖୋଜିବାକୁ ହୁଏ ନିର୍ମମତାର କରଗୃହରେ, ଆଲୁଅକୁ ଖୋଜିବାକୁ ହୁଏ ଅନ୍ଧାରର ବିବର୍ଣ୍ଣବଳୟ ସେପାଖରେ, ସୁଧା କଳସୀର ସନ୍ଧାନ ହୁଏ ଅତଳାନ୍ତ ସାଗର ଗର୍ଭର ବିଷଜ୍ୱାଳାରେ । ଏଠି ଓଠର ହସ ଓ ଆଖିର ଲୁହ ପାଇଁ ମୁହଁରେ ସମାନ ଜାଗା ଦେବାକୁ ପଡ଼େ । ସବୁ ଭାଙ୍ଗି ଦେବାକୁ ହୁଏ ଓ ଭଙ୍ଗା ହାଡ଼ର ଭସ୍ମକୁଡ଼ ଉପରୁ ସଜଡ଼ା ଦୁନିଆଁର ସବୁଜ ସ୍ୱପ୍ନ ତଥାପି ଦେଖିବାକୁ ପଡ଼େ ।

ସାହିତ୍ୟ, ସଙ୍ଗୀତ, ସ୍ଥାପତ୍ୟ କଳାର ମନୋହାରୀ ରାଜ୍ୟରେ ସେ ସ୍ୱପ୍ନର ରୂପସନ୍ଧାନ କରାଯାଏ । ଧର୍ମ, ଦର୍ଶନ, ଶାସ୍ତ୍ରର ବଗୃହରେ ସେ ସ୍ୱପ୍ନର ମୂଲ୍ୟ ନିର୍ଦ୍ଧାରଣର ପ୍ରୟାସ ହୁଏ । ଏ ଦ୍ୱିଭାଗୀୟ ଜଗତ ତେଣୁ ସୃଜନ କଳାର ଜଗତ ପୁଣି ସୃଷ୍ଟି-ବହିର୍ଭୂତର ଜଗତ । ଉଭୟ ପ୍ରତିନୟତ ପରସ୍ପର ଆଡ଼କୁ ସଞ୍ଚାଳିତ ହେଉଥାନ୍ତି, ମାତ୍ର ଏମାନେ ଯେମିତି ଦୁଇଟି ପ୍ରତି-ବସ୍ତୁ ପିଣ୍ଡରେ ଗଢ଼ା ନକ୍ଷତ୍ର, ଏକତ୍ର ହେବାର ସମ୍ଭାବନା ଭୂମି ଖୋଜିପାଆନ୍ତି ନାହିଁ । ଯେମିତି ଏକତ୍ର ହେଲେ ହିଁ ବିସ୍ଫୋରଣ ଘଟିଯିବ । ପ୍ରାଣର ବ୍ୟାକୁଳତାରେ ସୁନ୍ଦରର, ମଧୁରର ଆବେଦନ ଯେତେ ପ୍ରଗାଢ଼ ହୋଇଯାଏ, ସେ ସୁନ୍ଦର ଓ ମଧୁରକୁ ଧରି ରଖିବାର ସାମର୍ଥ୍ୟ ସେତେ ଖର୍ବ ହଉଥାଏ । ସ୍ରଷ୍ଟା କଳାକାରର ହତାଶା—ତାର ଅନ୍ୱେଷିତ 'ସୁନ୍ଦର'-ପୃଥିବୀର ବାହାର । ଦର୍ଶନର ହତାଶା—ଅପାର୍ଥିବ ଅରୂପ ସୌନ୍ଦର୍ଯ୍ୟକୁ କ'ଣ ରୂପରେ ଧରି ହେବ । ଅତଏବ ଦ୍ୱନ୍ଦ୍ୱଟାର ସତ୍ୟ, ଦ୍ୱନ୍ଦ୍ୱର ସିଢ଼ିରେ ଉଠୁ ଉଠୁ କେଜାଣି ବା ନିର୍ଦ୍ୱନ୍ଦ୍ୱର ଭୂମିଟି ମିଳିଯାଇପାରିବ ।

ପ୍ରମୂର୍ତ୍ତରୁ ଅମୂର୍ତ୍ତକୁ ଏ ଲମ୍ଫ-ଆୟାସରେ ନିଜ ପାଇଁ କେବଳ ଆଶ୍ୱାସନା—କେଉଁଠି ହୁଏତ ପହଞ୍ଚି ଯାଇହେବ ।'କାହିଁକି' ଖିରନ୍ଦାଜ ହେବ । ଏକ ଅପରରେ ସଂଯୁକ୍ତ ହେବ । କ୍ଷୁଦ୍ର ମହାନରେ ସମାହିତ ହେବ । କ୍ଷୀଣକୁ ବିରାଟ ସମ୍ଭାଳିନେବ । ପ୍ରାଣ ମହାପ୍ରାଣକୁ ସଞ୍ଚରିଯିବ । ଯେଉଁ ଦୁଇକୁ ନେଇ ଦ୍ୱନ୍ଦ୍ୱ—ଦ୍ୱିଭାଗୀୟ ଅଛି ବୋଲି ଦ୍ୱନ୍ଦ୍ୱ—ତାହା ଲୋପହେବ, ତାର ଦ୍ୱିତ୍ୱ ଲୋପ ହେବ । ସବୁ ଅଦ୍ୱୈତ—ଏକମେବା ମଦ୍ୱିତୀୟମ୍ ।

'ଏକ'ର ଲକ୍ଷ୍ୟ ବିନ୍ଦୁରେ ସମାହିତ ବିଲୟ ଘଟିଲେ ଯେଉଁ ଅଲକ୍ଷ୍ୟ-ଆଳୟର ପ୍ରବେଶ ଦ୍ୱାର ଉନ୍ମୁକ୍ତ ହୋଇଯାଏ—ତାହା କ'ଣ ଅତି ପ୍ରତ୍ୟକ୍ଷତାର ତୃତୀୟ ଜଗତ ?

ଏ ଜଗତ ଏତେ ସ୍ପଷ୍ଟ, ଏ ଭୂମି ଏତେ ସ୍ଥିର ଯେ ଏଠି ଆକାଶକୁ ମଧ୍ୟ ଛୁଇଁ ହୁଏ । ଆଲୋକକୁ ମଧ୍ୟ ଧରିହୁଏ । ଅନୁଭବକୁ ଆଶ୍ଲେଷି ହୁଏ । କେବଳ ଦେହକୁ ଧରି ପ୍ରତ୍ୟକ୍ଷକୁ ଚହ୍ନିବାକୁ ଶିଖିଥିବା ପ୍ରଥମ ଚେତନା ଭୂମି ଏଠାରେ ଯେପରି ଦେହର ବାହାର ଭବଭୂମିକୁ ପ୍ରତ୍ୟକ୍ଷତାରେ ଅନୁଭବ କରିପାରେ, ଦ୍ୱିଭାଗୀୟ ଜଗତର ଭାବଗତ ଅପ୍ରତ୍ୟକ୍ଷତାକୁ ମଧ୍ୟ ସ୍ପଷ୍ଟ ପ୍ରତ୍ୟୁତ୍ତର କରିପାରେ ।

ସବୁ ଏଠି ନିଜ ରୂପରେ ସ୍ପଷ୍ଟ, ନିଜ ଅର୍ଥରେ ସାର୍ଥକ, ନିଜ ଭାବରେ ପଡ଼ିଛନ୍ତି ।

ଅଦ୍ୱୈତର ଭୂମି ଏୟେ ନୁହେଁ । କାହାର ବିଳୟ ନାହିଁ । ଦ୍ୱୈତର ପୂର୍ଣ୍ଣ ସ୍ୱୀକୃତ ଓ ପ୍ରକାଶ-ବଳୟରେ କିନ୍ତୁ କିଛି ବିରୋଧ ବି ନାହିଁ । ଏଠି ଅଛି ରହିଛି । ନାହିଁ ବି ରହିଛି । ପୁଣି ହଁ ଓ ନା ଏକତ୍ର ରହିବାରେ ଅସମ୍ଭବ କିଛି ନାହିଁ । ନାସ୍ତିବାଚକତା ମଧ୍ୟ ଏଠାରେ ଅସ୍ତିବାଚକତାର ପ୍ରତ୍ୟକ୍ଷତାରେ ବିରାଜିତ । ଦ୍ୱୈତ ଅଛି, ଦ୍ୱନ୍ଦ୍ୱ ନାହିଁ, ଭିନ୍ନତା ରହିଛି, ଭିନ୍ନତାର ସମସ୍ୟା ନାହିଁ । ବସ୍ତୁ-ପ୍ରତିବସ୍ତୁର ସଂଘର୍ଷ ନାହିଁ । ସବୁ ବୈପରୀତ୍ୟ ସହାବସ୍ଥାନ ସୂତ୍ରରେ ଆପଣାର ନିଶ୍ଚିତ ପରିଧି ଖୋଜି ନଅନ୍ତି । କ୍ଷୁଦ୍ର ବୃହତ୍, ସୁନ୍ଦର କୁତ୍ସିତ, ଅନ୍ଧାର ଆଲୁଅ ସବୁ ଠିକ୍ ଅଛନ୍ତି, ନାହିଁ କେବଳ ଏକକୁ ନେଇ ଆରେକର ଅସ୍ୱସ୍ତି । ନାହିଁ କଳା ଓ ଧଳା; ଭଲ ଓ ମନ୍ଦର ବିଗୁର-ବାଡ଼ । ଦ୍ୱିତୀୟ ଭୂମିର ସଂଶୟ ନାହିଁ । ଦୁଃଖ ଥାଉ, ମନ୍ଦ ଥାଉ, ଅନ୍ଧାର ଥାଉ, ସେମାନଙ୍କୁ ଟାଣି ଓଟାରି ସୁଖରେ, ଭଲରେ, ଆଲୁଅରେ ବଦଳାଇଦେବା ବି ପ୍ରୟୋଜନ ମନେହୁଏ ନାହିଁ ।

ଏ ଭୂମି ମାଟିର ବି, ଆକାଶର ବି, ଏକର ବି, ବହୁର ବି । ଏକ ଅପରକୁ ବିରୋଧ କରେନାହିଁ, ଅସ୍ୱୀକାର କରେନାହିଁ । ନସ୍ୟାତ୍ କରେନାହିଁ । ଏଠି ଗୋଟିକର ସୃଷ୍ଟି ଅନ୍ୟର ବି ସୃଷ୍ଟି ନୁହେଁ । ଏକ ଅନ୍ୟର ସତ୍ତା ଗ୍ରାସ କରେ ନାହିଁ । ଆଲୋକ ଅନ୍ଧାରକୁ ଅପସାରଣ କରେନାହିଁ । ଅନ୍ଧାର ଆଲୋକର ଅନ୍ତର୍ଧାନକୁ ଅପେକ୍ଷା କରେନାହିଁ । ଛାୟାଲୋକର ବିଚିତ୍ର ଲୀଳାଭୂମି ଏ । ପ୍ରତ୍ୟେକ ଏଠି ନିଜ ରୂପରେ ବିରାଜିତ, ନିଜ ଅର୍ଥରେ ପ୍ରତିଷ୍ଠିତ, ଅପରକୁ ଅର୍ଥଦାନ କରିବାରେ ମଧ୍ୟ ସମର୍ଥ । ଏ ରାଜ୍ୟ ପୁଣି କେବଳ ରୂପ-ମୂର୍ତ୍ତ ନୁହେଁ, କେବଳ ଭାବ-ରସ ବି ନୁହେଁ, ରୂପର ନିଜ ସତ୍ୟରେ ଫୁଟି ଉଠିବାବେଳେ ଭାବତାପୂର୍ଣ୍ଣ ମଧ୍ୟ ତାତ୍କାଳିକ ଉଦ୍ଭାସରେ ଚମକିତ । ପ୍ରଥମ ଜଗତର ଉପଲବ୍ଧ ଯେଉଁ ରୂପ-ସତ୍ୟ ଦ୍ୱିତୀୟ ଜଗତର ଭାବଗତ ଅପ୍ରତ୍ୟକ୍ଷତାକୁ ଅପସାରିତ ହୋଇଯାଇଥାଏ, ଏ ଜଗତରେ ଯେମିତି ତାର ପୁନର୍ନ୍ୟାସ ଘଟେ । ଭାବକୁ ଏତେ ସ୍ପଷ୍ଟ, ଅର୍ଥକୁ ଏତେ ଦୀପ୍ତ, ରୂପକୁ ଏତେ ବିଚିତ୍ର ଅନ୍ୟ କେଉଁ

ଭୂମିରେ ପୂର୍ବରୁ ଦେଖିହୋଇ ନ ଥାଏ । ସତ୍ୟଙ୍କୁ ଏ ଭଳି ପ୍ରମୂର୍ତ୍ତି ଭେଟିବା ସମ୍ଭବ ହୋଇଥାଏ ।

ଏ ଭୂମିରେ ଏକ ନୂତନ ପ୍ରଶ୍ନର ସମାଗମ ହୁଏ 'କପରି' । ମାତ୍ର ପୂର୍ବୋଚ୍ଚାରିତ କଣ ଓ କାହିଁକିର ଉତ୍ତର ନୁହେଁ, କପରିର ବସ୍ତୁର ଦୃଷ୍ଟିରୁ ମଧ୍ୟ ସତ୍ୟର ନୂତନ ଝଲକ ଦେଖିବାକୁ ମିଳେ । ପ୍ରଥମ ଜଗତର ସତ୍ୟ ଦୃଷ୍ଟି ଯଦି କେବଳ ବହୁଦର୍ଶନ, ଦ୍ୱିତୀୟ ଜଗତର ସତ୍ୟବୋଧ ଯଦି କେବଳ ଅନ୍ତର୍ଜ୍ଞାନ, ଏ ଜଗତରେ ଉଭୟ ଯେପରି ଏକ ପରମ ବିଜ୍ଞାନମୟ ବୋଧି ଦୃଷ୍ଟିରେ ସମ୍ମିଳିତ । ଏଠାରେ ବହୁଦର୍ଶନ ଆଉ ଆପାତତଃ ଦର୍ଶନ ନୁହେଁ, ଅନ୍ତର୍ଦୃଷ୍ଟିର ପ୍ରମାଣାତୀତ ସ୍ୱାନୁଭବ ମାତ୍ର ନୁହେଁ, ସବୁ ଅତି-ପ୍ରାମାଣିକ । ରୂପ ଏଠି ଏଭଳି ସତ୍ୟ, ମୁହୂର୍ତ୍ତ ଏଠି ଏଭଳି ସତ୍ୟ, ଏକ ଏଠି ଏଭଳି ସତ୍ୟ, ଯାହା ଅରୂପରେ, ଶାଶ୍ୱତରେ, ବହୁତ୍ୱରେ ମିଳାଇ ଯାଏନାହିଁ; ଅଥଚ ସେମାନଙ୍କ ପ୍ରତିପକ୍ଷରେ, ବିଚ୍ଛିନ୍ନତାରେ ବି ଆପଣାର ମୂଲ୍ୟ ହରାଏ ନାହିଁ ।

ଏ ଜଗତ ଗ୍ରହଣଶୀଳତାର । ଅସ୍ପୃହଣୀୟ କିଛି ବି ରହେ ନାହିଁ । ସବୁ ପରମ ଉପଭୋଗ୍ୟ । ବାସନାର ବନ୍ଧନ ହୋଇ କିଛି ବାନ୍ଧି ରଖେନାହିଁ, ପ୍ରେମର ପୁଷ୍ପରାଗରେ ସୁବାସିତ କରିଦିଏ । ସବୁ ଅନୁଭବ ବିଭୂତିର ବୈଭବ ସାଜ । ଜୀବନ ବିଷ୍ଣୁପଦ, ଅଶ୍ରୁ ମନ୍ଦାକିନୀ, ହସ ତାରକିତ ମୁକ୍ତାବିନ୍ଦୁ, ଦୁଃଖ କର୍ପୂରାଳଙ୍କୃତ ହୋଇ, ତ୍ରିଭୁବନର ଐଶ୍ୱର୍ଯ୍ୟ-ଈଶ୍ୱରଙ୍କୁ ସତ୍ତାର ସାର-ସର୍ବସ୍ୱରେ ସମାର୍ଚ୍ଚନା କରେ ।



# ତୃତୀୟ ସଂବଂଧ

ପୃଥିବୀରେ ସମ୍ବନ୍ଧମାନଙ୍କର ସୂତ୍ର ବିଭିନ୍ନ ହୋଇପାରେ, ମାତ୍ର ସବୁ ସମ୍ପର୍କର ମୂଳରହସ୍ୟ ଗୋଟିଏ । ତାହା ଦ୍ୱିପାକ୍ଷିକ । ଅର୍ଥାତ୍ ପାରିବାରିକ, ସାମାଜିକ ବା ଭାବସମ୍ପର୍କ ହେଉ, ସମ୍ବନ୍ଧଜନିତ ସମସ୍ୟା ଓ ଅନୁଭବର ବିସ୍ତୃତ କ୍ଷେତ୍ର କିନ୍ତୁ ସଂବନ୍ଧ-ବଦ୍ଧ ଦୁଇଟି ବ୍ୟକ୍ତି ହୃଦୟ । ସମ୍ବନ୍ଧର ସର୍ବପ୍ରଥମ ଏବଂ ସ୍ପଷ୍ଟ ଅର୍ଥ ଆଗକୁ ବଢ଼ାଇଥିବା ଏକ ହାତକୁ ଆଉ ଏକ ବଢ଼ାଇବା ହାତର ସ୍ୱୀକୃତି । ବହୁ ହାତର ସଂଯୋଗ ସହଯୋଗିତା ହୋଇପାରେ, ସମ୍ବନ୍ଧ ହୁଏ ନାହିଁ । ସେତୁଟିଏ ଦୁଇଟି ବିନ୍ଦୁ ମଝିରେ ନିର୍ମିତ ହୋଇଥାଏ । ତୃତୀୟଟି ସେଇ ସେତୁର ମଧ୍ୟ ବା ପ୍ରାନ୍ତ ହୋଇପାରେ ନାହିଁ । ଯେଉଁଠି ତୃତୀୟଟି ଆବିର୍ଭୂତ, ସେଠାର ପାରସ୍ପରିକ ଶବ୍ଦ ହିଁ ନାହିଁ । ଅନ୍ୟ ଏକ ବିନ୍ଦୁ ସହ ଯୋଗାଯୋଗରେ ବହୁ ବିନ୍ଦୁ ଏକତ୍ର ହୋଇପାରନ୍ତି, ଏକ ହୋଇପାରିବେ ନାହିଁ ।

ସମ୍ବନ୍ଧର ନିଜ କ୍ଷେତ୍ରରେ କୌଣସି ଏକ ଜାଗତିକ ସମ୍ବନ୍ଧ ଅନ୍ୟ ଏକ ସମ୍ବନ୍ଧକୁ ସ୍ପର୍ଶ କରିପାରିବ ନାହିଁ, ପ୍ରଭାବିତ କରିପାରିବ ନାହିଁ, ପ୍ରତିହତ ବି କରିପାରିବ ନାହିଁ । ସୂର୍ଯ୍ୟ ପୃଥିବୀ ସହ ସମ୍ବନ୍ଧ ବାନ୍ଧିବା ବେଳେ ଅନ୍ୟ ଗ୍ରହମାନଙ୍କ ସହ ସ୍ୱତନ୍ତ୍ର ସମ୍ବନ୍ଧର ନିୟମାଧୀନ । ପୁଣି ଅନ୍ୟାନ୍ୟ ଜ୍ୟୋତିଷମାନଙ୍କ ସହ ତାର ମହାକାଶୀୟ ସମ୍ବନ୍ଧ ସୂତ୍ର ମଧ୍ୟ ସ୍ୱୀକୃତ । ସେହିପରି ପୃଥିବୀ ମଧ୍ୟ ସୂର୍ଯ୍ୟ ସମେତ ସବୁ ଗ୍ରହ ନକ୍ଷତ୍ରଙ୍କ ସମ୍ବନ୍ଧପ୍ରଭାବକୁ ସୂର୍ଯ୍ୟର ଅନୁମତି ଅପେକ୍ଷା ନକରି ତାର ଜନ୍ମ ଜାତକରେ ଗ୍ରହଣ କରିନିଏ, ସେ କଥାତ ରାଶି-ଚକ୍ରରେ ସ୍ୱୀକୃତ । କେହି କାହାର ଭାବ ସମ୍ବନ୍ଧ ପାଇଁ ପରସ୍ପର ଛଡ଼ା ଅନ୍ୟପାଖେ, ତୃତୀୟ ସମ୍ବନ୍ଧ ପାଖେ ଉତ୍ତରଦାୟୀ ନୁହନ୍ତି । ତୃତୀୟ ବୋଲି ଏକ ବିନ୍ଦୁକୁ ଯେ କେହି ଆଣି ମଝିରେ ଠିଆ କରାଏ, ବୁଝିନେବାକୁ ହେବ, ପାରସ୍ପରିକ ସମ୍ବନ୍ଧର ବିଶ୍ୱାସ, ମୌଳିକ ଭିତ୍ତିକୁ ସେ ପ୍ରଶ୍ନ କରୁଛି, ଆଘାତ କରୁଛି, ମର୍ମ ଉଚ୍ଛେଦ କରୁଛି । ତୃତୀୟ ବିନ୍ଦୁ ଖୁବ୍ ବେଶିରେ ଗୋଟିଏ ତ୍ରିଭୁଜର କୋଣ ରଚନା କରିପାରେ ଯାହା ଦୁଇଟି ଯୋଗସୂତ୍ରକାରୀ ବିନ୍ଦୁର ବାହାରେ । ଯଥାର୍ଥରେ ତୃତୀୟ ସମ୍ବନ୍ଧ ବୋଲି କିଛି ନାହିଁ । ତୃତୀୟ ବୋଲି ମନେ

ହେଉଥିବା ସମ୍ବନ୍ଧ ହୁଏତ କେଉଁ ବ୍ୟକ୍ତିଗତ ସମ୍ପର୍କର ନିୟମରେ ଦ୍ୱିତୀୟ ଏବଂ ସେ ଦ୍ୱିତୀୟ ଭୂମିର ମର୍ଯ୍ୟାଦା କ୍ଷୁଣ୍ଣ କରି ତାକୁ ତୃତୀୟ ଭୂମିରେ ଥୋଇଦେବା ମାତ୍ରେ ସମ୍ବନ୍ଧର ସବୁ ମର୍ଯ୍ୟାଦା, ମୂଲ୍ୟବୋଧ ଅବମାନିତ ହୁଏ, ସମ୍ବନ୍ଧ **ଅସମ୍ବନ୍ଧ** ହୋଇଯାଏ ।

ସମ୍ବନ୍ଧର ଆପଣା ଭୂମିରେ ପ୍ରତ୍ୟେକ ସମ୍ବନ୍ଧକୁ ସ୍ୱତନ୍ତ୍ର କରି ମୂଲ୍ୟ ଦେବାକୁ ହୁଏ, ସ୍ୱତନ୍ତ୍ର କରି ହାତ ବଢ଼ାଇବାକୁ ହୁଏ । ସେ ସଂବନ୍ଧକୁ ଅନ୍ୟ ଉପରେ ଲଦି ଦେବା ଯେପରି ତାର ଗ୍ଲାନିକାରକ, ଅନ୍ୟର ଦ୍ୱାରର ଅର୍ଗଳକୁ ଠେଲିଦେବା ସେହିପରି ଅମର୍ଯ୍ୟାଦାକର । ଅନ୍ୟ ଏକ ସମ୍ପର୍କକୁ ଯେ ଆପଣା ଦୁଇଜଣଙ୍କ ମଝିରେ ଠିଆକରାଏ, ସେ ହୁଏତ ଅନ୍ୟ ଦୁଇଙ୍କ ସହ ନିଜର କୌଣସି ସମ୍ପର୍କକୁ ଠିକ୍ ମୂଲ୍ୟ ଦେଇନି, ଆପଣାକୁ କାହାରି ପାଖେ ବି ଠିକ୍ ଦେଇଜାଣିନି । ନିଜ ଦୃଷ୍ଟିରୁ ସମ୍ପର୍କର ଏକ ଛାୟାମୂର୍ତ୍ତିକୁ ନିଜର ମନୋମତ କରି ଗଢ଼ିଛି ମାତ୍ର ।

ଦୁଇଜଣଙ୍କ ଭିତରେ କୌଣସି ଯଥାର୍ଥ ସମ୍ପର୍କର ଆଉ କେଉଁ ଯଥାର୍ଥ ଦ୍ୱୈତସମ୍ପର୍କ ସହ କେବେ ବି ବିରୋଧ ଘଟିପାରେନା । ତାର ସଂପୂର୍ଣ୍ଣ ପ୍ରତ୍ୟକ୍ଷ ଓ ତାତ୍‌କାଳିକ । ଦୁଇଟି ହୃଦୟର ଏକକାଳୀନ ପାରସ୍ପରିକ ସମ୍ଭାଷଣ— ଯାହାର ଉଚ୍ଚାରଣ ବେଳେ ତୃତୀୟର ସମ୍ଭାବନା ବି ନ ଥାଏ, ତାର ବିରୋଧ କେଉଁ ପ୍ରକାରେ ବି ସମ୍ଭବ ନୁହେଁ । ଏହା ହିଁ ସମ୍ବନ୍ଧର ନିଜ ଭୂମିର,—ମହା-ଜାଗତିକ ଭୂମିର ସତ୍ୟ ।

ମାତ୍ର ପୃଥିବୀରେ, ପାର୍ଥିବ ସମ୍ବନ୍ଧ କ୍ଷେତ୍ରରେ ସବୁ ସମ୍ବନ୍ଧ ଦ୍ୱନ୍ଦ୍ୱାକୁଳ । ଭାବବିକ୍ଷେପ, ଈର୍ଷା, ଅସହିଷ୍ଣୁତା, ଆତ୍ମଂଭରିତାର ପୀଡ଼ନଯୁକ୍ତ ଏ ସଂବନ୍ଧ । ପ୍ରକୃତରେ ବ୍ୟକ୍ତିର ବ୍ୟକ୍ତିସହ ସଂବନ୍ଧ ସୃଷ୍ଟି ହୋଇନଥିବାର ମାତ୍ର ହେବାର ସମ୍ଭାବନାଯୁକ୍ତ ସମୁଦାୟ ଭବିତବ୍ୟ ଏ ପୀଡ଼ନ-ଆକୁଳ ପାରସ୍ପରିକତା । ସମ୍ବନ୍ଧ ସୃଷ୍ଟିର ଏକ ସ୍ୱତନ୍ତ୍ର ମୁହୂର୍ତ୍ତ ଅଛି । ସ୍ୱତନ୍ତ୍ର ତାତ୍ପର୍ଯ୍ୟ ଅଛି । ଯଥାର୍ଥ ସଂବନ୍ଧ ପ୍ରତିଷ୍ଠା କେବଳ ଗୋଟିକ କ୍ଷେତ୍ରରେ ସମ୍ଭବ ହୁଏ । ତାହା ଅନ୍ତଃସତ୍ତା । ନିଜର ଅନ୍ତରାତ୍ମାରେ ଅନ୍ୟ ଏକ ଅନ୍ତରାତ୍ମାକୁ ସ୍ୱତଃ ଗ୍ରହଣ କରିନେବା ମୁହୂର୍ତ୍ତରେ ହିଁ ସମ୍ବନ୍ଧର ଉଦ୍‌ବୋଧନ ଘଟେ । ଅନ୍ତଃଭୂମିରେ ସଙ୍ଘଟିତ କିମ୍ବା ପାରସ୍ପରିକ

ଆକର୍ଷଣ ବାତ୍ସଲ୍ୟ ହେଉ, ପ୍ରଣୟ ହେଉ, ସୌଖ୍ୟ ହେଉ ବା ଦାମ୍ପତ୍ୟ ହେଉ ଯଥାର୍ଥ ଶ୍ରଦ୍ଧାଭକ୍ତିରେ ସ୍ନିଗ୍ଧ ହୋଇଥାଏ ।

ଅନ୍ତରର ପ୍ରଣୟ ଯେ ପ୍ରୀତି ସୃଷ୍ଟିକରେ ତାହା ଅନ୍ତଃସତ୍ତ୍ୱର ଅବିଚଳ ବିନ୍ଦୁରେ ଧ୍ରୁବ ସମାହିତ । ମାତ୍ର ଆମେ ଆମର ସେ ଅନ୍ତ୍ୟସ୍ୱରୂପରେ କେତେ ବଞ୍ଚୁ ? ଆମର ବଞ୍ଚିବାତ ବେଶିଭାଗ ଦେହର ଭୂମିରେ, ଭାବ ବିନିମୟ ଘଟେ ଆବେଗ ଓ ଅନୁଚିନ୍ତାର ଧାରା ପ୍ରବାହରେ । ଆତ୍ମା ନୁହେ, ଆତ୍ମାର ପ୍ରଚ୍ଛାୟା ହିଁ ଆମକୁ ଆମର ବ୍ୟକ୍ତିତ୍ୱର ଏକ ରୂପ ଗଢ଼ିଦେଇ ପୃଥିବୀରେ ଆତଯାତ ହେବାକୁ ଛାଡ଼ିଦିଏ । ଆମେ ପ୍ରତ୍ୟେକ ଆମର ଏଇ ଛାୟାବିମ୍ବ ସହ ଜଡ଼ିତ । ଏହି ପ୍ରତି-ବିମ୍ବକୁ ଆମେ ଆମର ପ୍ରକୃତ ପରିଚୟ ବୋଲି ଧରିନେଇ ବଞ୍ଚିବା ଭିତରେ ଜାଣି ବି ପାରୁନା ସେ ଛାୟା କେତେବେଳେ ବଢ଼େ ତ କେତେବେଳେ ଛୋଟେ । ଅନ୍ୟ ଛାୟା ସହ ଯେତେବେଳେ ସେ ମିଳିମିଶି ଯିବାର ସମ୍ଭାବନା ସୃଷ୍ଟିକରେ ଆମେ ତାକୁ ମନ ମିଳିବାର ରୂପ ଦେଉ, ଅନ୍ୟର ଛାୟା ଯଦି ବୃହତ୍ତ୍ୱ ଓ ସ୍ପର୍ଦ୍ଧିତ ହୋଇ ଦେଖାଦିଏ ଆମେ ନିଜକୁ ଖର୍ବ ହୋଇଯିବାର ଆଶଙ୍କାରେ କ୍ଷୁବ୍ଧ ଓ ଈର୍ଷାତୁର ହେଉ । ପୁଣି ନିଜ ଛାୟାରେ ଅନ୍ୟ ଛାୟାକୁ କ୍ଷୁଦ୍ରାୟିତ କରିବାର ଚେଷ୍ଟା କରି ଆତ୍ମତୃପ୍ତିର ପରିଚର୍ଯ୍ୟା କରୁ । ସବୁବେଳେ ଛାୟା-ସଚେତନ ଏ ମନ । ଯେତେବେଳେ କେହି ଆମର ଏହି ଛାୟାକୁ 'ଆମେ' ବୋଲି ସ୍ୱୀକାରର ଗୌରବ ଦିଏ, ଆମେ ତାକୁ ନିଜର ଗୌରବ ମଣି ସ୍ଫୀତ ହୋଇଯାଉ । ବୁଦ୍-ବୁଦ୍‌ର ସ୍ଫୀତିକୁ ଯେ ଆଦର ନିଏ; ବିସ୍ଫୋଟକର ଭାଗ୍ୟକୁ ତାକୁ ବରିନେବାକୁ ହେବ । ଆମେ ଭୁଲିଯାଉ ଯେ ବୁଦ୍‌ବୁଦର ସୃଷ୍ଟି ଓ ବିଲୟ ଜଳାଶୟର ସୃଷ୍ଟି ବା ବିଲୟ ନୁହେଁ । ଗୋଟାଏ ଛାୟାକୁ ସ୍ୱୀକାର କରିବା ବା ଅସ୍ୱୀକାର କରିବା, ଭଲ ପାଇବା ବା ଅନାଦର କରିବା ସମାନଭାବେ ଅର୍ଥହୀନ । ଛାୟା ପାଖେ କୌଣସି ଆବେଦନର ଚିରନ୍ତନ ମୂଲ୍ୟ ନାହିଁ । ଛାୟା ନିଜେ କ୍ରିୟାହୀନ, ସ୍ପନ୍ଦହୀନ । ସବୁ ସ୍ପନ୍ଦନ ଏକମାତ୍ର ହୃଦୟରେ ପରିସ୍ପନ୍ଦିତ । ଯେ ପର୍ଯ୍ୟନ୍ତ ହୃଦୟର ନିଭୃତ ପ୍ରେମ ସ୍ପନ୍ଦନ ଅପର ହୃଦୟର ସ୍ପନ୍ଦନ ସହ ଛନ୍ଦୋବଦ୍ଧ ନ ହୋଇଛି ସେ ପର୍ଯ୍ୟନ୍ତ ଯଥାର୍ଥ କୌଣସି ସମ୍ପର୍କ ସ୍ଥାପିତ ହୋଇନାହିଁ, ଏବଂ ଯାହା ଆରମ୍ଭ ହୋଇନାହିଁ—ତାହା ଶେଷ ହେବାର ପ୍ରଶ୍ନ ବି ଉଠୁ ନାହିଁ । ଆଉ ଥରେ ତାହା ଗଢ଼ା ହୋଇଗଲେ କେବେ ବି ଭାଙ୍ଗିବ ନାହିଁ । ଯାହା ଭାଙ୍ଗେ ବୋଲି ମନେ ହୁଏ ତାହା ଛାୟାର ହାନିବୃଦ୍ଧି ମାତ୍ର । ଯେହେତୁ ଏ ପୃଥିବୀରେ ଏମିତି ସମୟ

ଅଛି, ଯେଉଁଠି ତୃଷ୍ଣା ନିଜେ ମଧ୍ୟ ଅନ୍ତର୍ହିତ, ସେଠି ତାର ଅନୁଭବ ସମ୍ପର୍କର ସ୍ଥାୟିତ୍ୱ ବିଷୟର କ'ଣ ? ମାତ୍ର ହୃଦୟର ଛୁଆଁଛୁଇଁ ଯଦି ଥରେ ଘଟିଯାଏ, ତାହେଲେ ସକଳ ଭାବ ବିକ୍ଷେପ ସତ୍ତ୍ୱେ, ତୃଷ୍ଣାର ଅପସାରଣ ସତ୍ତ୍ୱେ, ସେ ସମ୍ପର୍କ ତୁଟିବ ନାହିଁ ।

ହୃଦୟର ସେହି ଛନ୍ଦଯୁକ୍ତ ସମ୍ପର୍କ ହିଁ ପ୍ରେମ । ସବୁ ରୂପରେ, ଭାବରେ ସମ୍ବନ୍ଧରେ ମାନବାତ୍ମାର ଅବିନାଶୀ ପ୍ରେମ ଆପଣାକୁ ହିଁ ସ୍ୱତଃ ସ୍ଫୂର୍ତ୍ତ କରି ରହିଛି । ତାର ବିଲୟ ନାହିଁ । ତୃଷ୍ଣାମାନଙ୍କ ଦ୍ୱନ୍ଦ୍ୱ କଳହରେ ଆତ୍ମାର ପ୍ରେମ କ୍ଷୁଣ୍ଣ ହୁଏ ନାହିଁ । ବିନ୍ଦୁର ଆଉ ସଂକୋଚନ ନାହିଁ । ବରଂ ବିସ୍ତାର ଅଛି । ବିନ୍ଦୁରୁ ଅସୀମ ପର୍ଯ୍ୟନ୍ତ ପ୍ରେମର ସେ ବିଳମ୍ବିତ ବିସ୍ତାର ସର୍ବଦା ସେହି ଆତ୍ମାର ପ୍ରେମର ହିଁ ଜୟଗାନ କରିବ ।

ଗୃହଟିକୁ ମୁଁ ବୋଲି ଯାବୁଡ଼ି ଧରିଥିବା ପର୍ଯ୍ୟନ୍ତ ତୃଷ୍ଣାର ବଢ଼ିବା ଛୁଡ଼ିବା ଓ ପାରସ୍ପରିକ ପ୍ରତିଦ୍ୱନ୍ଦ୍ୱିତାରେ ଆମେ ଅନିବାର୍ଯ୍ୟତଃ ଲିପ୍ତ, ଯେହେତୁ ଗୃହ ଭିତରେ ଏଭଳି ଧ୍ରୁବ ସ୍ଥଳୀଟିଏ ନାହିଁ ଯେଉଁଠି ପ୍ରେମର ବିନ୍ଦୁଟିଏ ସ୍ପନ୍ଦିତ ହେବାର ଅବକାଶ ପାଇବ ।

କେହି ବିଘ୍ନ, ଅସହିଷ୍ଣୁ ଏ ଚିହ୍ନଟ ଭିତରେ କୌଣସି ଏକ ବ୍ୟକ୍ତି-ଆତ୍ମାକୁ କ୍ଷୁଦ୍ର ତୃଷ୍ଣାଯୁକ୍ତ କରିଦେବା ଓ ନିଜର ଛାୟାକୁ ପ୍ରଲମ୍ବିତ କରିଦେବା ଏକ ସଙ୍ଗରେ ହିଁ ଘଟିଥାଏ । ଯଥାର୍ଥ ହୃଦୟର ସମ୍ବନ୍ଧକୁ କେହି ଈର୍ଷା କରି-ପାରେନା, ପ୍ରଶ୍ନ କରିପାରେନା, ସଙ୍କୁଚିତ କରିପାରେନା । ଯେ ପ୍ରଶ୍ନ କରେ ସେ ନିଜେ ସେ ସଂବଧରେ ନିଶ୍ଚୟ ଆନ୍ତରିକ ନୁହେଁ ଏବଂ ଯେ ଆନ୍ତରିକ ସେ ସଂବଧ ନାମରେ ଆତ୍ମ-ବିଳାସ ଓ ଆତ୍ମ-ସାତ୍ ପର ଭୋଗ ବାସନାକୁ ମଧ୍ୟ ପ୍ରଶ୍ନ ନ କରି ରହିପାରେନା । ଗଙ୍ଗାଜଳ ସ୍ନାନାର୍ଥୀ ଅପର କାହାରିକୁ ସେ ସ୍ନାନ-ପୁଣ୍ୟର ସମଭାଗୀ ବୋଲି ଈର୍ଷା କରେନା । ଦେବଦର୍ଶନାର୍ଥୀ ତୀର୍ଥଯାତ୍ରୀ ଦର୍ଶନ ପୁଣ୍ୟର ସୌଭାଗ୍ୟକୁ ପ୍ରତିଦ୍ୱନ୍ଦ୍ୱିତାର ପୃଷ୍ଠଭୂମିକୁ ଟାଣିଆଣେନା । ଦେବତା ତ ସମସ୍ତଙ୍କର । ମୂର୍ତ୍ତି ରୂପରେ କିନ୍ତୁ ସେ କାହାରି ବି ନୁହନ୍ତି । ଦେବତାକୁ ମୂର୍ତ୍ତିରେ ବିଡ଼ମ୍ବିତ କରି ଯେ ତାଙ୍କୁ ଅପହରଣ ଅଧିକାର କରିବାକୁ ବସେ, ସେ ନା ଦେବତା ନା ମଣିଷ କାହାର ଶ୍ରଦ୍ଧାର ସମ୍ପର୍କ ଆଡ଼େ ହାତ ବଢ଼ାଇ ନାହିଁ, ବରଂ ସମ୍ପର୍କର ସବୁ ଶ୍ରଦ୍ଧାଳୁ ହାତକୁ ଉଚ୍ଛେଦ କରିଛି । ପ୍ରେମ ସେଇ ଦେବତା, ଯିଏ ସବୁ ସମ୍ପର୍କକୁ ଜୀବନ୍ୟାସ ଦେଇଛି ।

ଦେବତାର ପ୍ରତ୍ୟେକ ଭକ୍ତ ସହ ସ୍ୱତନ୍ତ୍ର ସମ୍ବନ୍ଧ, ସୂର୍ଯ୍ୟର ପ୍ରତ୍ୟେକଟି ଗଛପତ୍ର ଧୂଳିମାଟି ଓ ଜୀବ ସହ ପ୍ରତ୍ୟକ୍ଷ ସମ୍ପର୍କ, ପ୍ରେମର ପ୍ରତିଟି ହୃଦୟ ସହ ପ୍ରତ୍ୟକ୍ଷ ସମ୍ପର୍କ । ପ୍ରେମ ଓ ଆତ୍ମା ମଝିରେ ଯଦି ପ୍ରଶ୍ନ କିଛି ଉଠିପାରେ ବୁଝିବାକୁ ହେବ, ତାହା ପ୍ରେମ ନୁହେଁ, ଆତ୍ମାର ଧନ ନୁହେ, ତାହା ବାସନାର, କ୍ଲେଶଭୂର ହଠକାରିତାର ଆବର୍ଜନା ମାତ୍ର । ପ୍ରେମର କ୍ଷେତ୍ରରେ ବିରୋଧ ନଥାଏ, ପ୍ରତିଦ୍ୱନ୍ଦ୍ୱିତା ନ ଥାଏ, କେବଳ ସହଗୃହିତା ଥାଏ । ତଥାପି ଆମେ ସମସ୍ତେ ଯଦି ଏ ପ୍ରଶ୍ନର ସମ୍ମୁଖୀନ ହେଉଥାଏ, ତାହେଲେ ବୁଝିବାକୁ ହେବ ଆମ ନିଜ ଆତ୍ମାର ଭାବନାକୁ, ସମ୍ବନ୍ଧର ସ୍ୱରୂପକୁ ଆମେ ଠିକ୍ ବୁଝିନାହୁଁ ।

ହୁଏତ ଆମେ ସମସ୍ତେ ମୂର୍ଖ, କିମ୍ବା ଜାଣିସିଆଣା । ହୁଏତ ଆମେ ଛାୟା-ସର୍ବସ୍ୱ, କିମ୍ବା ନିଜ ବିରଚିତ ହୃଦୟର ଖେଳରେ ଆମୋଦ ପାଇବା ପାଇଁ ଏ ଛାୟାକୁ 'କା' କରି ନିଜ ସାଙ୍ଗେ ଖେଳ ଚାଲିଛି । ଛାୟାର ଏ ଖେଳକୁ ହୁଏତ ସ୍ୱୀକାର କରିବାକୁ ହୁଏ, ଜାଗତିକ ସମ୍ବନ୍ଧ-ଭୂମିରେ ଅନନ୍ୟୋପାୟ ହୋଇ ତିଷ୍ଠି ରହିବାକୁ ହୁଏ । ମାତ୍ର ସମ୍ବନ୍ଧର ନିଜ ଭୂମିରେ ହୃଦୟ ଏ ଛାୟାବାଜି ଖେଳକୁ କେବେବି ସତ୍ୟ ବୋଲି ଗ୍ରହଣ କରେନାହିଁ । ସେତିକି ସ୍ୱୀକୃତିର ଆଶ୍ୱାସନାର ଭିତ୍ତିକରି ସ୍ରଷ୍ଟା ଏ ମର୍ତ୍ତ୍ୟଧାମରେ ଅମର୍ତ୍ତ୍ୟ ପ୍ରେମର ଫୁଲଟିଏ ଫୁଟାଇବାକୁ ବୋଧହୁଏ ସ୍ପର୍ଦ୍ଧା କରନ୍ତି ।



# ସାର ସଂଭାର

ଦେବତା ଭାଗ୍ୟବାନ । ସେ ସିଂହାସନରେ ବସିପାରେ, ପୁଷ୍ପାସନରେ ବସିପାରେ, କାହାରି ସହ ଏକାସନରେ କିନ୍ତୁ ବସି ବସିପାରେ ନାହିଁ କି କାନ୍ଦି ପାରେ ନାହିଁ । ଅଞ୍ଜଳିବଦ୍ଧ ପ୍ରଣାମରେ ପୋଡ଼ି ହୋଇଯାଇପାରେ, ଅଙ୍ଗୁଳିର ଉଷ୍ମ କୋମଳ ପ୍ରୀତିସ୍ପର୍ଶଟି ପାଇପାରେ ନାହିଁ । ମଣିଷଠାରୁ ତଫାତ୍ ହୋଇ ଦୈବତର ଊର୍ଦ୍ଧ୍ୱାସନରେ ବସିଥିବା ପର୍ଯ୍ୟନ୍ତ ସେ ମହାମହିମ ପ୍ରତାପଶାଳୀ, ଶକ୍ତିଶାଳୀ, ବିଚକ୍ଷଣକର୍ମୀ ନିୟନ୍ତା ବିଧାତା ହୋଇପାରେ, ମଣିଷର ହୃଦୟକୁ ଛୁଇଁବା ପାଇଁ କିନ୍ତୁ ତାଙ୍କୁ ଅନ୍ତରଙ୍ଗ ଆତ୍ମୀୟତାର ପରିଚୟଟିଏ ଲୋଡ଼ିବାକୁ ପଡ଼େ । ନିଜକୁ ଆତ୍ମୀୟ କି ଅନ୍ତରଙ୍ଗ ନ କରି ଆପେ ଆପେ ଗୁହାଁଲେ ମଣିଷ ପାଖେ ନିଜକୁ ସେ ଠିଆ କରାଇ ପାରିବ ନାହିଁ,— ସେ ମଣିଷ ଯେତେ ଅସହାୟ ହେଉ ପଛେ । ଭୟ, ବିସ୍ମୟ; ଦୈନ୍ୟ, ଅସହାୟବୋଧର ବେଦନା ପାଖେ ସେ ପ୍ରଭୁ ମାତ୍ର; ପ୍ରିୟଜନ ନୁହେଁ । ମଣିଷର ନିଜ ପ୍ରେମ, ନିଜ ହୃଦୟ ବ୍ୟାକୁଳତାର ହାତ ବଢ଼ାଇ, କଣ୍ଠ ଫିଟାଇ; ଆଖି ମେଲାଇ ତାଙ୍କୁ ପ୍ରିୟ ପରମ ବୋଲି ଆମନ୍ତ୍ରଣ ନ କରିବା ପର୍ଯ୍ୟନ୍ତ ପ୍ରିୟତାର ଉଦ୍‌ବୋଧନ ତା ଭିତରେ ଜାଗିବ ନାହିଁ ।

ପ୍ରେମ କ'ଣ ଦେବତା କ'ଣ ଜାଣେ ? ସେ ତ ସୁଖ-ଭୋଗୀ, ଗନ୍ଧ-ଭୋଗୀ । ଫୁଲ ଫୁଟିବାର ବେଦନାକୁ କ'ଣ ବୁଝେ ସେ ? ଭଲଲାଗିବ ହିଁ ତାର ସବୁ ଭୋଗର ପରିମାପ, ଭଲପାଇବା ହୋଇ ତରଳିଯିବାର ସେ କ'ଣ ଜାଣେ ସେ ଐଶ୍ୱର୍ଯ୍ୟ କୁଢ଼େଇ ଦେଇପାରେ, ଧନରତ୍ନ ବିଦ୍ୟାବୁଦ୍ଧି କଳା ପ୍ରତିଭା ଓ ରୂପଲାବଣ୍ୟର ବହୁ ବାହ୍ୟ ଓ ଆଲଙ୍କାରିକ ବିଭବ; ମାତ୍ର ପ୍ରେମ ?

ଦେବତାର ପ୍ରେମ ! ସେତ ଭୋଗ-ଇଚ୍ଛାର ପ୍ରତି-ନାମ ମାତ୍ର । ଏପରିକି ପ୍ରେମର ଦେବତାଟି ମଧ୍ୟ ପ୍ରେମର ସୁନ୍ଦରତମ ଅଥଚ ଶକ୍ତିଶାଳୀ ମହିମାଟିକୁ ଧରି ନ ପାରି ଭସ୍ମୀଭୂତ ହୁଏ । ମଦନ-ଭସ୍ମ କାଳରେ ରୁଦ୍ର-କୋପ ସହ ଅନ୍ୟାନ୍ୟ ଦେବତାଙ୍କ ଚତୁର କୁଟିଳ ବୁଦ୍ଧି ଓ କାମଦେବଙ୍କ ଆସ୍ଫାଳନର ହିଁ

ସଂଗ୍ରାମ ଘଟିଥିଲା; ମାନବ-ଦେହୀ ଉମାଙ୍କ ପ୍ରଣୟ-ତପସ୍ୟା ବିନା ଦେବତା-ଅନଙ୍ଗର ଆଉ କେଉଁ ଭବିଷ୍ୟତ ରକ୍ଷା ହୋଇ ପାରିଥାନ୍ତା ? ମଣିଷର ପ୍ରେମ ପ୍ରତି ଅସହିଷ୍ଣୁ ଦେବତା, ସ୍ପର୍ଶ ମାତ୍ରେ ପ୍ରେମର ଯେଉଁ ଶ୍ମଶାନ ରଚନା କରେ, ସେ ପ୍ରେମକୁ ନବଜନ୍ମ ଦେବାପାଇଁ ମଣିଷର ହୃଦୟରେ ହିଁ ତପୋଭୂମି ରଚିତ ହୁଏ । ଦେବତା ସର୍ବ-ଶକ୍ତିମାନ୍ ଅଥଚ ପ୍ରେମହୀନ; ଆଉ ମଣିଷ, ସୃଷ୍ଟିର ଦୁର୍ବଳତମ ଆୟୁଧହୀନ ଜୀବ କେବଳ ପ୍ରେମର ଶକ୍ତିରେ ହିଁ ବିଶ୍ୱ ହୃଦୟର ସାର୍ବଭୌମ ହେବାର ସ୍ୱପ୍ନ ଦେଖିଥାଏ ।

ଦେବତାର ଗୋଟିଏ ଋତୁ-ବସନ୍ତ । ତାହା ହିଁ ତାର ଅପରିବର୍ତ୍ତନୀୟ ଚିର ଋତୁ । ଦେବତାର ଗୋଟିଏ ଅବସ୍ଥା, ଯୌବନ । ତାହାହିଁ ତାର ଅନନ୍ତ ସମୟ । ମାତ୍ର ମଣିଷର ବିବିଧ କାଳ, ବିଚିତ୍ର ଋତୁ ସମ୍ଭାର । ସବୁ ଖଣ୍ଡିତ କ୍ଷୁଦ୍ର ମୁହୂର୍ତ୍ତ ତା ପାଇଁ ଅନନ୍ତଲଗ୍ନ । ସେ ସବୁ ଋତୁର ବିଚିତ୍ରତା, ସବୁ ସମୟର ଭିନ୍ନତାକୁ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ନବ ନବ ରୂପେ ଆସ୍ୱାଦନ କରେ । ମାତୃଗର୍ଭରେ ଶିଶୁର ପ୍ରଥମ ସଞ୍ଚାର ବେଳଠାରୁ ପିତାମାତାଙ୍କ ସ୍ନେହ ଶ୍ରଦ୍ଧାରେ ଉଚ୍ଚାରିତ ମଣିଷର ପ୍ରେମ ପିତୃଲୋକଙ୍କୁ ଶ୍ରାଦ୍ଧ ତର୍ପଣର ଜଳାଞ୍ଜଳି କରିବା ପର୍ଯ୍ୟନ୍ତ ଉଦ୍‌ଗତ ଦେବତାମାନଙ୍କ ଭଳି ତ୍ରିକାଳବୋଧିତା ଓ ଅଲୌକିକତା ତାର ନ ଥାଏ । ମାତ୍ର ହୃଦୟର ପ୍ରେମ ବିସ୍ତାରରେ ସେ ତ୍ରିକାଳବନ୍ଧକୁ ଅନାୟାସରେ ଅତିକ୍ରମ କରିଯାଏ ।

ଦେବତାମାନେ ବଡ଼ ଅଧିକାର-ସଚେତନ । ପଦ ପଦବୀ ସଚେତନ । ସ୍ୱର୍ଗରେ ସେମାନେ ଏକାଙ୍ଗ ଚକ୍ରବର୍ତ୍ତୀ । ମାତ୍ର ପୃଥିବୀରେ କେଉଁ ସ୍ତରର ଜୀବ ପାଇଁ ସ୍ଥାନ ନାହିଁ ? ପୃଥିବୀର ମମତାରେ କେଉଁ ଜୀବ ଲାଳିତ ନୁହେଁ ? ଧାରିତ ନୁହେଁ ? ସ୍ୱର୍ଗ କାହାକୁ ଅଯୋଗ୍ୟ ଅନୁପଯୁକ୍ତ ଘୋଷଣା କରି ଆପଣା ବକ୍ଷରୁ ଖସାଇ ଦେଇପାରେ । ମାତ୍ର କେହି କେବେ ପୃଥିବୀ-ଚ୍ୟୁତ ହୁଏନାହିଁ । ପ୍ରେମ ହିଁ ପୃଥିବୀର ଭାଗ୍ୟକୁ ଧରି ରଖିଥାଏ । ସେ ପ୍ରେମ ସ୍ୱର୍ଗ ଓ ନରକ ଉଭୟରେ ମଣିଷ ହୃଦୟରେ ଜାଗି ରହିଥାଏ, ତାକୁ ରକ୍ଷା କରିଥାଏ, ସମ୍ଭାଳି ଥାଏ । ପେମର-ଦେବତା-ହାତରେ ନୁହେଁ, ପ୍ରେମର-ମଣିଷ ହୃଦୟରେ ହିଁ ପ୍ରେମ ଆପଣାକୁ ପ୍ରତିଷ୍ଠିତ ଦେଖିବାର ସମ୍ଭାବନା ଜାଣିଶୁଏ ହେଲେ ବି ଖୋଜିଯାଏ । ତାର ଲୁହ, ତାର ସ୍ୱପ୍ନ, ତାର ଆର୍ତ୍ତି ଓ ସମର୍ପଣରେ ପ୍ରେମର ହିଁ

ନିବେଦନ । ଦେବତା ଜାଣେନା ସେ ପ୍ରେମର ଆଶୀର୍ବାଦ । ସେ କେବଳ ପ୍ରେମକୁ ଅଭିଶପ୍ତ କରିପାରେ । ସେଇ ପ୍ରେମ-ଶକ୍ତିତା କିଏ ତାକୁ ମଣିଷର ପ୍ରଣୟ-ଭାଗ୍ୟ ପ୍ରତି ଅସହଣି କରେ ? ଈର୍ଷୁକ କରେ ? ପ୍ରେମ-ବ୍ୟାକୁଳ ଯକ୍ଷ ହୃଦୟକୁ ଦେବତା ବର୍ଷାନ୍ତର ଅଭିଶାପ ଦିଏ । ଅଥଚ ଆଖିଲୁହର ମୂଲ୍ୟ ଦେବାପାଇଁ ତାର କୁବେର-ପୁଷ୍ପରେ ପ୍ରତିଦାନ ନ ଥାଏ ।

ଦେବତାର ପ୍ରେମ ଗ୍ରହିବାଠୁଁ ବଳି ବିଡ଼ମ୍ବନା ପୃଥିବୀରେ ଆଉ କଣ ଅଛି ? ଦେବତା କଣ ପ୍ରେମ କଣ ବୋଲି ଜାଣିଛି ? ସେଇଥିପାଇଁ ତ ଦେବାଧିରାଜଙ୍କୁ ବାରବାର ଲୀଳାବତାରରେ ମର୍ତ୍ତ୍ୟର ମଣିଷ ପାଖରୁ ପ୍ରେମର ରୀତି ଶିଖିବାକୁ ହୁଏ । ତୀକ୍ଷ୍ଣ ଅସିଧାରେ ପଥ ଚାଲିବା, ତପ୍ତଲୌହ, ଗରଳକୁ ଅଞ୍ଜୁଳିରେ ପରମ ପ୍ରମୁଦିତ ହୋଇ ଶୋଷିନେବା କେବଳ ମଣିଷ ପାଖେ ସମ୍ଭବ ହୁଏ । ଦେବତା ପାଖରେ କେବଳ 'ସ୍ୱାହା' ଶବ୍ଦଟିଏ ଅଛି ।

ଯଦି କେଉଁ ଦେବତାକୁ ମଣିଷ ସ୍ୱୀକାର କରିବା, ଗ୍ରହଣ କରିବା ଦରକାର ହୁଏ, ତା ପାଇଁ ସେ ଦେବତା ଏକମାତ୍ର ପ୍ରେମର ଦେବତା । ସେ ଦେବତା ଧନମାନଯଶ କି ରୂପରଙ୍ଗରସର ସୂର୍ଯ୍ୟଚନ୍ଦ୍ର ଇନ୍ଦ୍ରକୁବେର ନୁହନ୍ତି, ଏପରିକି ରତିପତିମଦନ ବି ନୁହନ୍ତି । ସେ ପ୍ରେମର ଆକର୍ଷକ-ଶକ୍ତିରୁ କଳ୍ପିତ ଯେ ମଦନର ଶକ୍ତିରୂପେ ଆବିର୍ଭୂତ, ତା ବି ତାକୁ ମଦମତ୍ତ ଅବ୍ୟବସ୍ଥିତ ଓ ଅସଂଯତ କରି ବାରବାର ନିଜ ପାଇଁ ଏବଂ ଅପର ପାଇଁ ବିପର୍ଯ୍ୟୟମାନଙ୍କୁ ଡାକିଆଣେ । ସ୍ଥିର ସମାହିତ ଯୋଗୀ ଶିବ ବିନା ଯଥାର୍ଥ ପ୍ରେମକୁ କେବଳ ସଂଭୋଗର ସ୍ଥୂଳ ଭୂମିରେ କିଏ କପରି ଧାରଣ କରିବ ?

ଅତଏବ ପ୍ରେମର ଭରସା ଏଇ ମଣିଷ । ଦେବତାର ଭବିଷ୍ୟତ, ସୃଷ୍ଟିର ଭବିଷ୍ୟତ ଏଇ ମଣିଷ । ହୃଦୟର କ୍ଷୁଦ୍ର ଭୂମିରେ ପ୍ରେମର ମହାନତାକୁ ସେ ପ୍ରତିଷ୍ଠା କରିପାରେ । ଜନ୍ମମରଣବଦ୍ଧ ଜୀବନକାଳର ଖଣ୍ଡିତ ମୁହୂର୍ତ୍ତ-ମାନଙ୍କରେ ସେ ପ୍ରେମକୁ ବିପୁଳ ବିସ୍ତାର କରିଦେଇପାରେ । ସବୁ ବନ୍ଧନ, ଦେହ ମନ ପ୍ରାଣର ସବୁ ତାଡ଼ନାକୁ ଭୋଗି, ସେମାନଙ୍କୁ ହୃଦୟ-ଯଜ୍ଞର ସମିଧ ସଜାଇ, ବୈରାଗ୍ୟର ଗୈରିକ ବାସକୁ ଅନୁରାଗର ରଙ୍ଗରେ ଭିଜାଇ ପ୍ରେମକୁ ସ୍ୱମହିମାରେ ଆବିର୍ଭୂତ ହେବାର ଅବକାଶ ସୃଷ୍ଟି ପାଇଁ ଆପଣାକୁ ଶଯ୍ୟା କରି ବିଛାଇଦିଏ ।

ଏ ମଣିଷ ଭଗୀରଥ । ତାର କ୍ଳେଶ, ସନ୍ତାପ, ତପସ୍ୟାର କଙ୍କଟିଳ ପଥ ଉପରେ ଦିବ୍ୟ ପ୍ରେମର ଭାଗୀରଥି-କରୁଣା ଅବତରିତ । ସ୍ୱର୍ଗାଙ୍ଗା ମର୍ତ୍ତ୍ୟରେ ହିଁ ପତିତପାବନୀ । ସେ ପାବନ-ମନ୍ତ୍ର ମଣିଷର ଭଗୀରଥ-ଆତ୍ମା ଉଚ୍ଚାରିଥାଏ । ବିଶ୍ୱାମିତ୍ର-ସତ୍ତା ଉଦ୍‌ଭାସମୟୀ ଗାୟତ୍ରୀଙ୍କୁ ଅନ୍ଧାରର୍ ଆଲୋକ-ଦିଗ୍ୟ ପାଇଁ ଉଦ୍‌ବୋଧିତ କରିଥାଏ ।

ଦେବତାମାନେ ତ ନିଜେ ଗୋଟାଏ ପ୍ରଲୋଭନ । ଦେବ-ପଦର ପ୍ରଲୋଭନ ପାଖେ ଆପେ ବନ୍ଧା ବୋଲି ସୃଷ୍ଟିକୁ ବି ବନ୍ଧା ପକାଇବା କଥା ଭାବି ଦିଅନ୍ତି ଓ ସମସ୍ତେ ସହଜେ ବନ୍ଧା ପଡ଼ଯାନ୍ତି ବୋଲି ଧରିନିଅନ୍ତି । ମଣିଷର ଆତ୍ମାଭିମାନ ସେମାନେ କେବେ ବି ସହନ୍ତି ନାହିଁ । ମଣିଷର ପରୀକ୍ଷା ଯେତେ ମଣିଷ ନିଏ ନାହିଁ ସେତେ ନିଅନ୍ତି ଛଦ୍ମବେଶୀ ଦେବତାମାନେ । ଆସନଟି ଛଡ଼ା ନିଜସ୍ୱ ପରିଚୟ କଣ ଆଉ ତାଙ୍କର ? ଇନ୍ଦ୍ର ଗାଦିରୁ ହଟିଲେ ଆଉ କି ଇନ୍ଦ୍ର ? ଅଥଚ ମାଟି ଆସନ ଉପରେ ଚିରକାଳ ବସିଥିବା ମଣିଷର ଆଉ କେଉଁ ଗାଦିଚ୍ୟୁତିର ଶଙ୍କା ?

ଗୋଟିଏ ସ୍ଥାନରେ ମଣିଷ ପାଖେ ଦେବତାର ସବୁ ଶକ୍ତି ବାରବାର ହାରିଯାଏ । ମଣିଷର ବିନା ସ୍ୱୀକୃତି ଓ ସହଯୋଗରେ, ମଣିଷର ଇଚ୍ଛା, ପ୍ରାର୍ଥନା ଓ ସାମର୍ଥ୍ୟ ଅତିକ୍ରମ କରି, ମଣିଷର ଝଙ୍କାଳିକୁ ଦେବତା ପରିପୂର୍ଣ୍ଣ କରିପାରିବ ନାହିଁ କି ତାକୁ ଦେବଦାନବ କରିଦେଇପାରିବ ନାହିଁ ।

ବୋଧହୁଏ ଏଇଥିପାଇଁ ଯେ, ମଣିଷ ପାଖେ ଦେବତା ହେବା ତାର ମାନବତ୍ୱର ସିଦ୍ଧି ନୁହେଁ, ପ୍ରଲୋଭନ ମାତ୍ର । ମାନବତାର ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ଆତ୍ମବିକାଶରେ ସ୍ୱତନ୍ତ୍ର ସ୍ୱାଧୀନ ଅଧିକାର ମଣିଷକୁ ଦ୍ରୁକ୍ରୁତ ଦେଇଛି । ସୃଷ୍ଟିର ଧାରାରେ ଥରେ ଦେବତାମାନଙ୍କୁ ସେ ଗଢ଼ିସାରିବାପରେ ଆଉ ମଣିଷମାନଙ୍କର ଦେବତା ହେବା କଣ ଦରକାର ?

ମଣିଷ ମଣିଷଟିଏ ହେବା ଦେବ ବା ଦାନବ କେହି ତାର ସ୍ଥାନ ପୂରଣ କରିପାରିବେ ନାହିଁ । ତାର ଅସାମର୍ଥ୍ୟ ଓ ବିକୃତିମାନ ଯେତେବେଳେ ଆପଣା ଆପଣା ଖଞ୍ଜାଳିକୁ ଅତିକ୍ରମ କରିଯିବେ, ସେ ଦେବତାର ବିଭୂତି ବା ଦାନବର ଶକ୍ତି ବିନା ମଧ୍ୟ ସୃଷ୍ଟିକୁ ସମର୍ଥ ପାଦରେ ଠିଆ କରିଦେବ ।

ସୃଷ୍ଟିର ଧାରାରେ ମଣିଷ ଏକ ଛନ୍ଦ, ଏକ ସଂହତି, ଏକ ବିନ୍ୟାସ । ବହୁ ବିବିଧତାର ଏକତ୍ର ସଂଯୋଗ ସମନ୍ୱୟ ଓ ସୌଷ୍ଠବ ବିଧାନର ପ୍ରୟୋଗଶାଳା ତାର ଜୀବନ ।

ଏ ପୃଥିବୀ ଚିରକାଳ ମଣିଷର । ଯୁଗେ ଯୁଗେ ଦେବ-ଦାନବମାନେ ତାଠାରୁ ସେ ଅଧିକାର କାଢ଼ି ନେବାକୁ ଆସନ୍ତି । କେହି ଲୋଭ ଦେଖାଇ, କେହି ଭୟ ଦେଖାଇ ମଣିଷର ମନ ନେଇ ଖେଳି । ସେ ପ୍ରଲୋଭନ ଓ ସେ ଭୟରେ ଇହକାଳ, ପରକାଳ ସବୁ ଛନ୍ଦା ପଡ଼ିଯାଏ । ମଣିଷ କଣ ସତରେ ଇହ-ପରରେ ବିଭକ୍ତ ହୋଇପାରେ ? ତା ପାଇଁ ଇହ-ବଞ୍ଚିତ ପରଲୋକ ଓ ପର-ନିଶ୍ଚିନ୍ତ ଇହ ଭୋଗ ସବୁ ଅସାର୍ଥକ । ଉଭୟଙ୍କର ସଂଯୋଗ, ପରସ୍ପର-ସାପେକ୍ଷ ଓ ପରିପୂରକ ଭୂମିଟିଏ ଖୋଜି ନ ପାଇବା ପର୍ଯ୍ୟନ୍ତ ସେ ନିଜକୁ ମଣିଷ ବୋଲି, ପୃଥିବୀର ଜୀବ ବୋଲି ଭୁଲିପାରେନାହିଁ । ନିଜଠାରୁ ମଧ୍ୟ ନିଜେ ଖସିପାରେ ନାହିଁ ।

ଦେବତା ମଣିଷର ଭାଗ୍ୟ ନୁହେଁ କି ଭବିତବ୍ୟ ନୁହେଁ । ମଣିଷର ଭାଗ୍ୟ ସେ ନିଜେ, ଭବିତବ୍ୟ ମଧ୍ୟ ତାର ସ୍ୱପ୍ନ ଭିତରେ ଗୁନ୍ଥା । କେହି ମଣିଷ ହାତରେ ସ୍ୱର୍ଗକୁ ଧରାଇଦେବ ନାହିଁ । ଅମୃତକୁ ଢୋକି ପିଆଇ ଦେବନାହିଁ । ମଣିଷ ହୃଦୟର ଜ୍ୱାଳା କେଉଁ ସୁରାମୃତ ପ୍ରଶମିତ କରିପାରିବେ ନାହିଁ । ସେମାନେ କେବଳ ଗ୍ରସ୍ତ କରି ରଖିବେ, ମତ୍ତ କରି ରଖିବେ, ତୃପ୍ତ କରିପାରିବେ ନାହିଁ ।

ମଣିଷ ଦେବତା ହେବା ବଡ଼ କଥା ନୁହେଁ । ଦେବତା ହୋଇ ନପାରିବା କିଛି ଦୁଃଖର କଥା ନୁହେଁ । ମାତ୍ର କେବଳ ମଣିଷଟିଏ ହେବାକୁ ଭୁଲିଯିବା—ତା ପାଇଁ ଓ ପୃଥିବୀ ପାଇଁ—ଦୁର୍ଭାଗ୍ୟର ଶେଷକଥା । ଦେବତାର ଭୟ ମଣିଷକୁ । ସେ ମଣିଷ ଯେତେବେଳେ ମଣିଷପଣିଆର, ଶକ୍ତିର ପରିଚୟ ଖୋଜିବସେ, ଦେବତାର ଦୈବୀ ଅହଙ୍କାର ଆପେ ଆପେ ଶଙ୍କିଯାଏ ।

ଦେବତା କଣ ଜାଣେନା ଯେ ମଣିଷକୁ ସେ ଯେଉଁଥିରେ ଅଭାବୀ କରିବ ମଣିଷ ତାକୁ ତାହା ହିଁ ମାଗିବସିବ । ତାର ପ୍ରାର୍ଥନା ଦେବତାର ହାତ ଆଙ୍ଗୁଳି ଉପରେ ନିବଦ୍ଧ ରହିବ । ପୂର୍ଣ୍ଣ-ହୃଦୟ ଅନୁରାଗମୟ ମଣିଷଟିଏ ହିଁ ଦେବତାର ପ୍ରୀତିଭରା ଆଖିକୁ, ସ୍ମିତ-ମଧୁର ଓଠକୁ, ଫୁଲ-କୋମଳ ପଦ-ନଖ-ପ୍ରାନ୍ତକୁ ଆପଣାର ପ୍ରେମ-ଭାଗ୍ୟ ସମର୍ପି ଦେବ ।

ମଣିଷର କିଛି ତେଜ-ଆଲୁଅ ନାହିଁ । କେବଳ ହୃଦୟଟିକୁ ଘୀପ କରି ଜଳାଇ ରଖିଥାଏ । ଫୁଲ କରି ଫୁଟାଇ ରଖିଥାଏ । ଚନ୍ଦନ କରି ଘୋରି ରଖିଥାଏ । ନିଜ ହୃଦୟର ଭାବକୁ ହିଁ ମନ୍ତ୍ର କରି ଜପୁଥାଏ । ଯେଉଁ ଦେବତା ତାହା ଜାଣେ, ସେ ହିଁ ସେ ପୂଜାଟିର ପ୍ରାପ୍ୟ-ଅଧିକାରୀ ହୁଏ । ସେଥିପାଇଁ ଦେବତାଙ୍କୁ ଅନ୍ତର୍ଯ୍ୟାମୀ ହେବାକୁ ହୁଏ, ଭୁଷାଗ୍ରସନରେ ଯୋଗରୂଢ଼ ହେବାକୁ ହୁଏ, ଗହନ କାନନରେ ବିରହ-ବଂଶୀ ବଜାଇବାକୁ ହୁଏ । ଖଟୁଲିରୁ ଓହ୍ଲାଇ ଆସି, ଧୂଳି ଉପରେ ମଣିଷ ସାଙ୍ଗେ ଏକାଠି ବସିବାକୁ ହୁଏ । ହାତ ଦୁଇଟି ମୁଠାଇ ନେବାକୁ, ମୁହଁ ଟେକି ଉଠାଇ ଦେବାକୁ, ଆଖି ଲୁହ ପୋଛି ଦେବାକୁ ଓ ମଥା ଆଉଁସି ଦେବାକୁ ହୁଏ । ମଣିଷର ଏ ପ୍ରେମର ଦାବୀ, ହୃଦୟର ଦାବୀ । ଦେବତାର ସବୁ ଶକ୍ତିଠାରୁ ବଳି ଶକ୍ତିଶାଳୀ । ଦେବତା ମଣିଷକୁ ଅନାଦର କରିପାରେ, ଉପେକ୍ଷା କରିପାରିବ ନାହିଁ । ହୁଏତ ରକ୍ଷା କରିବ କିମ୍ବା ଧ୍ୱଂସ କରିବ । ନିଃସ୍ପୃହ ଉଦାସୀନତାରେ ମୁହଁ ବୁଲାଇ ଚାଲିଯାଇ ପାରିବ ନାହିଁ । ମଣିଷ ଓ ଦେବତାର ସମ୍ବନ୍ଧର ରହସ୍ୟ ଯେଉଁ ଦେବତା ବୁଝେ ନାହିଁ ସେ ମଣିଷର ଦେବତା ନୁହେଁ, ଆଉ ମଣିଷ ବିନା ତାର ଦେବତ୍ୱର ସ୍ୱୀକୃତ ସୃଷ୍ଟିରେ ଆଉ କେଉଁଠି କାହାପାଖେ ବି ନାହିଁ ।

ମଣିଷ ଦେବତା ପାଖେ କି ପରିଚୟ ନେଇ ଠିଆ ହେବ ? ଆର୍ତ୍ତି ଜଣାଇଲେ ସେ ଦୀନ, ଅଭାବ ଜଣାଇଲେ ସେ ଦରିଦ୍ର, ଅଭିମାନ ଜଣାଇଲେ ସେ ଅହଙ୍କାରୀ । ଦେବତାର ସିଂହାସନ ତଳେ ମଣିଷର ପରିଚୟ ସେ ଦୀନ ଭିକାରୀ କିମ୍ବା ଉଦ୍ଧତ ଅହଂକାରୀ । ଅଥବା କେବଳ ସ୍ତୁତି-ରଚନାକାରୀ ।

ସତରେ କଣ ଦେବତା ବୁଝିପାରେ ମଣିଷର ଅଭାବ କଣ ? ଦୁଃଖ କଣ ? ଜ୍ୱାଳା କଣ ? ସନ୍ତାପ କଣ ? ଦେବତା କେବେ ନିଆଁରେ ପୋଡ଼ି ହୋଇଛି ? ଅରମାରେ ଚାଲିଛି ? କଣ୍ଟାଗଛରୁ ଫଳ ଫୁଲ ତୋଳିଛି ? ଚନ୍ଦ୍ର-ବନରେ ଫଣି ନାଗ ମୁଣ୍ଡରେ ପାଦ ରଖିଛି ? ଦେବତା କଣ ରାତି ଉଜାଗର ରହି ଜହ୍ନ ତାରରେ ସ୍ୱପ୍ନର କବିତା ପଢ଼ିଛି ? ରାତି ଅନ୍ଧାରରେ ହଜି ଯିବାର ଛନକା ଭୋଗିଛି ?

ଦେବତା କଣ ବୁଝିବେ ମଣିଷର ବେଦନା ! ମଣିଷ କେତେ ନିଃସଙ୍ଗ । ତଥାପି ସେ ସଙ୍ଗୀ ଖୋଜି ନିଏ । କେତେ ଏକୁଟିଆ, ତଥାପି ସମସ୍ତଙ୍କ ମେଳରେ

ବଞ୍ଚେ । ବାମନ-ଦେହ ତାର ମନରେ ତଥାପି ଆକାଶକୁ ଉଦ୍‌ବାହୁ ରହିଥାଏ । ଦୟା କରୁଣାର ଗୁହାଣୀଟିଏ ତାର ଫୋପାଡ଼ ଦେବାକୁ ନ ଥାଏ, ଦରଦର ହାତରେ ତଥାପି ସେ କୋଳେଇ ନିଏ । ବାଟ ଦେଖାଇ ଦେବାକୁ ତାର ଆଲୁଅ ନାହିଁ ତ ଅନ୍ଧାରରେ ହାତ ଧରି ପଥଶେଷର ଭରସା ହିଏ ।

ସୃଷ୍ଟିର ସବୁ ଆଶାଭରସା ଏ ମଣିଷ । ତାର ଦିବ୍ୟ ଭୈରବ ନାହିଁ ଅଦ୍ଭୁତକର୍ମା ଶକ୍ତି ନାହିଁ । କେବଳ ମୁଠାଟିଏ ହୃଦୟକୁ ସମ୍ବଳ ମାତ୍ର କରି ତାର ଜନ୍ମ, ଯୁଗ ଯୁଗକୁ ତାର ଯାତ୍ରାଭିସାର । ଦେବତା ତାର ଭାଗ୍ୟବିଧାତା ହୋଇପାରେ, ହୃଦୟର ବିଧାତା ନୁହେଁ । ହୃଦୟକୁ ଯେ ବିଧାତା ଯେ କେତେ ପ୍ରକାରେ ଭାଙ୍ଗି ଚୂରି ଓଲଟ ପାଲଟ କରି ଚଉମୁହାଁଣୀମାନଙ୍କରେ ବିତସ୍ତ କରି ଛାଡ଼ିଯାଏ । ତଥାପି ଭଙ୍ଗା ହୃଦୟ ର ସହସ୍ର ଟୁକୁରାରେ ବି ଆଶାଭିଳାଷ ଅଜସ୍ର ସ୍ୱପ୍ନର ମୁହଁ ହୋଇ ଝଳି ଉଠୁଥାଏ ।

ମଣିଷର ସ୍ୱପ୍ନ ସରିଗଲେ ସୃଷ୍ଟିର ଭବିଷ୍ୟତ ସରିଯିବ । ସୌନ୍ଦର୍ଯ୍ୟର ମାଧୁର୍ଯ୍ୟର ଆନନ୍ଦର ସବୁ ଆୟୋଜନ ନିରର୍ଥକ ହୋଇଯିବ । ଏ ସୃଷ୍ଟିର ପ୍ରେମର ପ୍ରତିଷ୍ଠା ଭୂମି ସ୍ୱର୍ଗରେ ନୁହେଁ, ଦେବତାଠାରେ ନୁହେ, ଏକମାତ୍ର ମଣିଷର ହୃଦୟରେ । ହୃଦୟ-ଶାମୁକାଟି ନଷ୍ଟ ହୋଇଗଲେ ମୁକ୍ତାଧାନର ଅବକାଶଟି ଆଉ କେଉଁଠି ବି ସମ୍ଭବବ ନାହିଁ । ସ୍ରଷ୍ଟା ସ୍ଥାଣୁ ରହିଯିବେ, ସୃଷ୍ଟି ସ୍ତବ୍ଧ ରହିଯିବ। ଦେବତା ପୂଜା ନୈବେଦ୍ୟମାନ କାଠ ପଥର ମାତ୍ର ହୋଇ ପଡ଼ି ରହିବେ ।

ଦେବତା ମଣିଷକୁ ପୂର୍ଣ୍ଣକାମ କରିପାରେ ନାହିଁ । ମଣିଷର ଶକ୍ତିସାଧନାକୁ ଦେବତାର ଆଶୀର୍ବାଦ ଅପେକ୍ଷା ରଖେ । ଯେଉଁଦିନ ମଣିଷ ଆପ୍ତକାମ ହୋଇଯାଏ, ଦେବତା ଆପେ ଆପେ ବାଞ୍ଛାକଳ୍ପତରୁ ହୋଇଯାନ୍ତି ।

ମଣିଷ ସୃଷ୍ଟିର ସାର-ସମ୍ଭାର । ସୃଷ୍ଟିର ଶ୍ରେଷ୍ଠ ପୁଷ୍ପାଞ୍ଜଳି ମଣିଷର ହୃଦୟକୁ ସେ ହୃଦୟାସୀନ ପ୍ରେମରୂପୀ ଦେବତାଙ୍କୁ ।



# ସାଂସାରିକ

ଦାସ୍ୟମୈଶ୍ୱର୍ଯ୍ୟବାଦେନ ଜ୍ଞାତୀନାଂ ତୁ କରୋମ୍ୟହମ୍
ଅର୍ଦ୍ଧଭୋକ୍ତାସ୍ମି ଭୋଗାନାଂ ବାଗ୍‌ଦୁରୁକ୍ତାନି ଚ କ୍ଷମେ ॥
ଅରଣୀ ମଗ୍ନିକାମୋ ବା ମଥ୍ନାନ୍ତି ହୃଦୟଂ ମମ
ବାଚ୍ୟଂ ଦୁରୁକ୍ତଂ ଦେବର୍ଷେ ତନ୍ମାଂ ଦହନ୍ତି ନିତ୍ୟଦା ॥
ବଳଂ ସଂକର୍ଷଣେ ନିତ୍ୟଂ ସୌକୁମାର୍ଯ୍ୟ ପୁନଃ ଗଦେ
ରୂପେଣ ମତ୍ତ ପ୍ରଦ୍ୟୁମ୍ନଃ ସୋଽସହାୟୋଽସ୍ମି ନାରଦ ॥
ସ୍ୟାତାଂ ଯସ୍ୟାହୁକାକ୍ରୂରୌ କିନ୍ନୁ ଦୁଃଖତରଂ ତତଃ
ଯସ୍ୟ ଚାପି ନ ତୌ ସ୍ୟାତାଂ କିନ୍ନୁ ଦୁଃଖତରଂ ତତଃ ॥
ସୋଽହଂ କିତବମାତେଃ ଦ୍ୱୟୋରପି ମହାମୁନେ
ଏକସ୍ୟ ଜୟମାଶଂସେ ଦ୍ୱିତୀୟସ୍ୟ ପରାଜୟମ୍ ॥

(ମହାଭାରତ)

'ହେ ନାରଦ, ନାମ ତ ମୋର ଈଶ୍ୱର, ହେଲେ କୁଟୁମ୍ବଙ୍କ ଗୋଲାମୀ ହିଁ କରୁଥାଏ। ଦେଖନା ମୋର ଭାଗ୍ୟ। ଭୋଗତ ଅଧା ମିଳେ, ମାତ୍ର ଗାଳି ପୁରାପୁରା। ଯେଉଁଭଳି ନିଆଁ ଜାଳିବା ପାଇଁ ଲୋକେ ଅରଣି କାଠ ମନ୍ଥନ୍ତି, ସେମିତି ମୋର ସଂପର୍କୀୟମାନେ ଗାଳିରେ ମୋର ହୃଦୟ ମନ୍ଥି ଦଅନ୍ତି। ମୋର ଜ୍ୟେଷ୍ଠ ବଳରାମ ନିଜ ବଳର ଅହଂକାରରେ ଚୂର, ଶ୍ରେଷ୍ଠ ଭାଇ ଗଦ ନିଜର ସୁକୁମାର ପଣିଆର ଅଭିମାନ ଗ୍ରସ୍ତ। ଜ୍ୟେଷ୍ଠପୁତ୍ର ପ୍ରଦ୍ୟୁମ୍ନ ରୂପ ଗର୍ବରେ ଫାଟି ପଡୁଥାଏ। ମୁଁ ପୁରା ଏକା ଓ ଅସହାୟ। ମୋର ଭକ୍ତ ଆହୁକ ଓ ଅକ୍ରୂର ସର୍ବଦା କଳହରତ (କିଏ ବଡ଼ ଭକ୍ତ ?) ତାଙ୍କୁ ବୁଝାଇ ବୁଝାଇ ମୁଁ ନସ୍ୟାନ୍ତ। ମୋର ଦଶା ସେଇ ଏକାଠି ଖେଳୁଥିବା ଦୁଇ ଜୁଆଡ଼ିଙ୍କ ମା' ପରି, ଯିଏ ଚାହୁଁଥାଏ କି ଗୋଟିଏ ପୁଅ ତ ଖେଳରେ ଜିତିଯାଉ, ଆଉଟି ବି ନ ହାରୁ।''

ସଂସାରର ବିକଳ ହାଲ ଈଶ୍ୱରଙ୍କୁ ବି ଅଜଣା ନୁହେଁ। ଏଠି ତାଙ୍କ ଈଶ୍ୱରତ୍ୱଙ୍କୁ ମଧ୍ୟ ନିସ୍ତାର ନାହିଁ। ଈଶ୍ୱର ବୋଲି ସଂସାର ଛାଡ଼ି ଦିଏ ନାହିଁ,

ତା ଭୂମିରେ ତାର କର୍ଷଣ ଦେଇ ତାଙ୍କ ଈଶ୍ୱରତ୍ୱକୁ କର୍ଷନ୍ତି ନାଏ । ସଂସାରର କର୍ଷଣରେ ସାଧାରଣ ଜୀବଟିଏ ପେଷି ହୋଇଯାଏ, ମାତ୍ର ସେ କର୍ଷଣକୁ ସ୍ୱୀକାର କରି ନେଇ ପୁରାପୁରି ସଂସାରୀ ହୋଇ ଚାଲୁଥିବା, ତଥାପି ସଂସାର ପାଖେ ବାନ୍ଧି ନ ପଡ଼ି ତାଙ୍କୁ ସଜାଡ଼ିବାରେ ଲାଗିପଡ଼ିଥିବା ବ୍ୟକ୍ତିଟି—କଣ ଈଶ୍ୱର ?

ସଂସାରୀର ରୂପ, ସଂସାରୀର ଜୀବନ, ସଂସାରୀର ତପସ୍ୟା ଅଲଗା ନୁହନ୍ତି, ତାର ସଂସାର ହିଁ ତାର ଜୀବନ ସାଧନାର ଘୋର ତପସ୍ୟା ।

ସଂସାର ତ ସାମାନ୍ୟ ନୁହେଁ । ଏଠି କେହି ତାକୁ ଫାଙ୍କିଦେବ, କେବଳ ଆକାଶରେ ଆଖିକୁ ଉଡ଼ାଇ ବଞ୍ଚିଯିବ, ମାଟି ଉପରେ ପାଦ ନ ଥାପି, ଆକାଶରୁ ଫୁଲ ଆଞ୍ଜୁଳିଭର୍ତ୍ତି କରି ତୋଳିନେବ, ତାହା ସଂସାର ଘୂଡିରେ କେବେ ସଂଭବ ନୁହେଁ । କାହାରିକୁ ସେ ଘୂଡିଦେବ ନାହିଁ, ଏପରିକି ତାର ସ୍ରଷ୍ଟା ବି ସଂସାରକୁ ଆସିବାକୁ ହେଲେ ସଂସାରର ବ୍ୟବସ୍ଥିତ କିଛି ରୂପ ଧରି, ଭେକ ପିନ୍ଧି, ପଞ୍ଚଭୂତରେ ପ୍ରକାଶମାନ ହୋଇ ଆବିର୍ଭୂତ ହେବେ । ପଞ୍ଚଭୂତର ଧରାବାନ୍ଧା ନିୟମରେ ଛନ୍ଦା ପଡ଼ିବେ, ଅଥଚ ଖର୍ବ ହେବେନାହିଁ । ସାଧାରଣ ସଂସାରୀଠାରୁ ଏତିକି ଯାହା ତଫାତ୍ ।

ସଂସାରରେ ସବୁ ଧରାବନ୍ଧା, ନିର୍ଦ୍ଦିଷ୍ଟ । ତଥାପି କଣ କିଛି ଗୋଟାଏ ବ୍ୟତିକ୍ରମର ଅଜଣା ରହସ୍ୟ ; Alchemy ଟିଏ ନାହିଁ ଯିଏ ପଥର ଓ ପରଶପଥରକୁ ଅଲଗା କରିଦିଏ, ଲୁହାକୁ ସୁନା କରିଦିଏ, ଦଳସଡ଼ା ପଙ୍କରୁ ପଦ୍ମ ଫୁଟାଇଦିଏ ? ସଂବାଳୁଆର ବିଷ-ଲୋମଶ ଦେହକୁ ଅପରୂପ ପ୍ରଜାପତି ସଜାଇଦିଏ ? କଳା ଅଙ୍ଗାରକୁ ହୀରକ ଦ୍ୟୁତିରେ ଝଲସାଇ ଦିଏ ଯେଉଁ ରହସ୍ୟକ୍ରିୟା, ତାହା ବି ସଂସାରର । ମାତ୍ର ତାହା କିଛି ଯାଦୁକରୀ ଭୋଜବାଜି ମିରାକ୍ଲ ନୁହେଁ, ତାହା ସୃଷ୍ଟି ରହସ୍ୟର ଆଶ୍ଚର୍ଯ୍ୟ କ୍ରିୟା-ବିଭୂତି, —ମାରଭେଲ । ସଂସାରର ଖର୍ବ ରୂପ ଭିତରେ ବି ପରିପୂର୍ଣ୍ଣତା ଆଡ଼କୁ ତାର ସଂଭାବନାମୟ ପ୍ରସାରଣଶୀଳତା ।

ଯୁଗ ଯୁଗର ଅଙ୍ଗାର ପୋଡ଼ି ତେଣୁ କଳା ହୁଅନ୍ତି, କାଳେ ଯୁଗାନ୍ତରରେ ହୀରାଟିଏ ଚମକିବ । କାଳେ ଶୁକ୍ତିଗର୍ଭରେ ମୁକ୍ତାଧାନ ହେବ । ସେଇ ଭରସାରେ ତ ସ୍ୱାତୀ ନକ୍ଷତ୍ରର ବର୍ଷାବିନ୍ଦୁକୁ ଅପେକ୍ଷା କରି କରି ଶାମୁକାମାନେ ବାଲିକଣାରେ କ୍ଷତବିକ୍ଷତ ହୋଇ ଲାଳରସ ନିଗାଡ଼ୁଥାନ୍ତି ଦୁଃଖ ମୋଚନର ମୁକ୍ତା-ଉଜ୍ଜ୍ୱଳ ମୁହୂର୍ତ୍ତିଟିଏ ଉତାରିବାକୁ ।

ସଂସାରରେ ସବୁ ସମୟାଧୀନ । ସମୟ ଓ ସଂସାର-ସମୟର ନିର୍ଦ୍ଦେଶରେ ସଂସାରର ଯାତ୍ରା । ଚଳମାନ ସମୟ ବୋଲି ହିଁ ଅସ୍ଥିର ସଂସାର । କ୍ଷଣକ୍ଷଣ ହୋଇ ସମୟ ଅନୁକ୍ଷଣ ସଂସାର ପାଖେ ଡିଆରି ହେଉଥାଏ, ତାରି ଭିତରେ ତଥାପି ଏଭଳି ଲଗ୍ନଟିଏ ଉପଜାତ ହୁଏ ଯାହା ଜୀବନକୁ ଲଗନଟିଏ ଧରାଇଦିଏ । କ୍ଷଣକୁ ମୁହୂର୍ତ୍ତର ବେଳା କରିଦିଏ । ଅଶେଷ ମୁହୂର୍ତ୍ତର ନିରବଧି ପ୍ରବାହ ଭିତରେ ଅପେକ୍ଷିତ ଗୋଟାଏ ବିଶେଷ ଏକକ ମୁହୂର୍ତ୍ତ, ଲଗ୍ନବେଳା । ଅସଂଖ୍ୟ କ୍ଷଣର ପ୍ରଚ୍ଛଦପଟରେ ସେ ସଂଜାତ । ସେଇ ବିଶେଷ ମୁହୂର୍ତ୍ତଟିରେ କ୍ଷଣ କ୍ଷଣ ଧରି ନିଗିଡ଼ା କୋଟି କୋଟି ଅଶ୍ରୁ ବିନ୍ଦୁର ମୁକ୍ତାର ତାଜମହଲଟିଏ କଳ୍ପିତ ହୁଏ । ଅନେକ ହଳାହଳ ମନ୍ଥନ ପରେ ବିଷ ସମୁଦ୍ରର ନୀଳ ଅତଳରୁ ନୀଳବସନା ଦିବ୍ୟବାଳା ଉର୍ବଶୀ ସୁନ୍ଦରୀର ଆବିର୍ଭାବ ହୁଏ ।

ସଂସାରୀର ମୁହୂର୍ତ୍ତମାନଙ୍କ କିଷଣ ସହି ନେଉଥାଏ ଏ ଦୁର୍ଲଭ ଲଗ୍ନ-ବେଳାଟିର ଜାତକ-ଲଗ୍ନ ରଚନା ପାଇଁ ।

ସଂସାରକୁ କାହିଁକି ଦୋଷ ଦିଆଯାଏ ? ସେ ତ ଅନୁଭୂତିଆଁ ଓ କୁଣ୍ଡଶିଖାରେ ଜନ୍ମମରଣର ଚିହ୍ନ ଆଙ୍କି ଦେହକୁ ସମାନଭାବେ ସେକ ଦେବାକୁ ସୃଷ୍ଟି ହୋଇଛି । ଫୁଲ ଆଞ୍ଜୁଳା ଓ କଣ୍ଟାଭଜା ରକ୍ତଧାରକୁ ନିଜେ ସଜାଡ଼ିଛି । ବିଷ ଅମୃତର ଭରି କଳସୀକୁ ଦୁଇ ହାତରେ ବହି ଚାଲିଛି ସମସ୍ତଙ୍କୁ ସମାନ ଭାବେ ପରଶି ଦେବାକୁ । କିଏ ଜାଣେ କାହାର କେତେବେଳେ କଣ ଲୋଡ଼ା ।

ସଂସାର କ୍ଷୁଧା ରଖିଛି, ତୃଷା ରଖିଛି, ଜ୍ୱାଳା ରଖିଛି, ତୃପ୍ତିର, ସନ୍ତୋଷର ରୂପ ବୁଝାଇବା ପାଇଁ । ସଂସାରକୁ ଦୋଷ କିଏ ଦେବ ? ସଂସାର କେଉଁ ଜଣକର କ୍ରୀତଦାସ ଯେ ତା ପଦତଳେ ସବୁ ଆଣି ଅଜାଡ଼ି ଦେବ ? ଏଠି ତ ସଂସାରକୁ କେହି କିଛି ଦିଏ ନାହିଁ । ସମସ୍ତେ ଆସନ୍ତି ନିଜ ଅଞ୍ଜଳି ଭରି ନେବାକୁ, ସଂସାରର ଗନ୍ତାଘର ଲୁଟି ନିଜେ ମହାଜନ ହୋଇଯିବାକୁ । ସେ ଲୁଟି ନେବାଟା କି ଧନର—ସଂସାର ଏତିକି ବୁଝାଇଦିଏ । ସଂସାର ପାଖେ କଣ ତଫାତ୍ ଅଛି ମାଟି ଗୋଡ଼ିପଥର କି ହୀରାନୀଳା ମାଣିକ୍ୟର ? କଣ ତଫାତ୍ ଅଛି ସୁଧା ସୁରାର ? ତା ତାତିଲା ଓଠର ଶୋଷ ପାଖେ ସବୁ ସମାନଭାବେ ପରମ ଆଦରରେ ନିଃଶେଷିତ ।

ସଂସାର ଅବଧୂତ, ପରମ ଯୋଗୀ, ନିର୍ଲିପ୍ତ, ଉଦାସୀନ । କିନ୍ତୁ ସେ ମନେକରେ ନାହିଁ । ହାତ ଫେରାଏ ନାହିଁ । ମାତ୍ର ହାତରେ ଜାବୁଡ଼ି ଧରେନାହିଁ ବି । ଯୋଉ ପାଣି ବୋହିଯିବାକୁ ଉଚ୍ଛନ୍ନ ହୁଏ ତାକୁ ସେ ପ୍ରବାହ ସଜାଇ ଦିଏ। ସଂସାର ରୂପକାର, ଶିଳ୍ପୀ । ରୂପକୁ ବଦଳାଇ ବଦଳାଇ ଦେଖି ଚାଲିଥାଏ । ସେଇଥିପାଇଁ ତ ଚିରନ୍ତନ ଶବ୍ଦଟାର ଅର୍ଥ କିଛି ବୁଝେନା ସେ । ତା ପାଇଁ ଅଚିରତା, ଅନିତ୍ୟତା ଏକମାତ୍ର ଚିରନ୍ତନତା । ମାତ୍ର ସେ ଛାଡ଼ିଦେବାରେ ତାର କାଙ୍ଗାଳପଣିଆ ନାହିଁ । ହରାଇବାର ବେଦନାନୁଭବ ସଙ୍ଗେ ଆଶ୍ୱାସନାଟିଏ ଶୁଣୁଥାଏ ଯେ ସମୁଦ୍ରରୁ ପାଣି ଶୁଖିଗଲେ ଆକାଶରେ ବାଷ୍ପବିନ୍ଦୁ ଭରିଯିବ । ଆକାଶ ଖାଲି ହୋଇଗଲେ ପାହାଡ଼ ପର୍ବତ ଜଳଧାରରେ ପ୍ଲାବିତ, ମରୁଭୂମି ପଲ୍ଲବିତ ହୋଇଯିବେ ।

ସଂସାର କାହାକୁ ବାନ୍ଧି ରଖେ ନାହିଁ । ସାଇତି ରଖେ ନାହିଁ । କାହାକୁ ବାନ୍ଧି ରଖନ୍ତା ? ଉଦ୍‌ଭିନ୍ନ ବୀଜକୁ ? କଅଁଳ ପତ୍ରକୁ ? ମୁକୁଳିତ କଢ଼ିକୁ ? ଅନନ୍ତ ଜୀବନକୁ ପ୍ରକାଶର ସୁଯୋଗ ଦେବାପାଇଁ ସଂସାର ବିନାଶର ସବୁ କଷ୍ଟକୁ ସଂହାଳୁଥାଏ । ଧ୍ୱଂସ ଭିତରୁ ସୃଷ୍ଟିକୁ ସଜାଡ଼ୁଥାଏ । ସଂସାର ମହାଜ୍ଞାନୀ-ଭସ୍ମକୁ ବିଭୂତି କରିଦେବାର ମନ୍ତ୍ର ଜାଣେ ସେ, ସେ ମହାପ୍ରେମୀ ବୈରାଗ୍ୟର ଗୈରିକକୁ ଅନୁରାଗ-ରଞ୍ଜିତ ଦେହବାସରେ ସଜାଇ ଦେବାର ସ୍ପର୍ଶ-କୌଶଳ ବି ଜାଣେ । ପରମ ଯୋଗୀ ସଂସାର, ଉଦାର ହୃଦୟକୁ ଉନ୍ମୁକ୍ତ କରିଦିଏ ସୃଷ୍ଟି ପାଖେ, ତାର ବହୁ ବିଧ ରୂପଅଭିବ୍ୟକ୍ତି ପାଖେ । ସବୁ ବିପରୀତତାକୁ ସମାନ ଭାବେ ଗ୍ରହଣରେ ସଂଭାଳିନିଏ, ଫୁଲ କଣ୍ଟା, ବିଷ ଅମୃତ, ଗ୍ରହଣ ବର୍ଜନ ସମସ୍ତଙ୍କୁ କୁଶଳ ଜିଜ୍ଞାସାକରେ । ବର୍ଣ୍ଣାଢ୍ୟ ସୁଷମାରେ ଅଳଙ୍କୃତ ରାଜରାଣୀ ପ୍ରକୃତିକୁ ଯେଭଳି ଅଭିବାଦନ କରେ, ମହାପ୍ରଳୟକାରିଣୀ ତାର ରୁଦ୍ରବେଶସମ୍ପନ୍ନ ରୂପକୁ ସେଭଳି ଅଭ୍ୟର୍ଥନା ଜଣାଏ । ଘୋର ଜ୍ୱାଳାମୁଖୀର ଉତ୍ତପ୍ତ ବେଦନା ଓ ଶୀତଳ ଗଙ୍ଗୋତ୍ରୀର ସ୍ନିଗ୍ଧ ଆଶ୍ୱାସନା ଗ୍ରହଣରେ ଅକୁଣ୍ଠିତ ଭାବେ ସଂଭାଳିଧରେ ।

ସଂସାର ପରମ ଧୈର୍ଯ୍ୟଶୀଳ । ବାରବାର ପ୍ରଳୟରେ ତାର ହାତଗଢ଼ା ଭବ୍ୟପ୍ରାସାଦ ଧୂଳିସାତ୍ ହୁଏ । ପୁଣି ପ୍ରଳୟାନ୍ତରରେ ସେ ଆଉ ଥରେ ସୁନ୍ଦରତର ଭବ୍ୟତର କରି ସବୁ ଗଢ଼ିବାର ଆୟୋଜନରେ ଲାଗିଯାଏ । ସଂସାର କେବେ କ୍ଲାନ୍ତ ନୁହେଁ, ଚିର ନିରଳସ ହୋଇ ସୃଷ୍ଟିକୁ ସ୍ନେହ ଓ ଶ୍ରମ ଦେଇ ବଂଚାଇ ଚାଲିଥାଏ । ମୃତ୍ୟୁ ରୂପୀ କଂସ ହାତରେ ତାର ଦେବକୀ-ଜନମିତ୍ତି

ଆଠଥର ମାତ୍ର ନୁହେଁ, ଅଷ୍ଟକୋଟି ନୟୁତରୁ ବି ଅଧିକଥର ରକ୍ତ-ବିମ୍ବିତ ହୁଏ । ତଥାପି ସେ ଦୁର୍ଭାଗ୍ୟର ବନ୍ଦୀଶାଳାରେ ସୌଭାଗ୍ୟର ଅନୁଡ଼ ସଜାଡୁଥାଏ, କାଳେ କୃଷ୍ଣାବତାରଟିଏ ସଂଭବିବ । ତାର ଆଖିଲୁହ, ଗର୍ଭ ଯନ୍ତ୍ରଣା, ହୃଦୟ ମନ୍ଥନର ରକ୍ତାକ୍ତ ଯନ୍ତ୍ରଣା ଭିତରେ ତଥାପି କୃତାଞ୍ଜଳିର ମନ୍ତ୍ରଟିଏ ଅନୁରଣିତ ହୋଇ ଚାଲିଥାଏ—'ଓଁ ନମୋ ଭଗବତେ ।'

ପ୍ରତିମୁହୂର୍ତ୍ତରେ ସଂସାର ଟିକେ ଟିକେ ହୋଇ ସରିଯାଉଥାଏ । ଅସଲ କିନ୍ତୁ ତାର ସ୍ୱପ୍ନ, ଅଭିଳାଷ, ଆୟୋଜନ ଓ ଆକୂତି । ଏଠି ସମସ୍ତେ ସଂସାରର ସେଇ ତପସ୍ୟାରେ ନିଜର ସ୍ୱପ୍ନ, ଶକ୍ତି ଓ ଆକୂତି ଯୋଡି ଦେଉଥାନ୍ତି । ହୁଏତ ତାର ବହୁଭାଗ ନିଜ ଅଜଣାରେ । ସଚେତନ ଭାବେ ସଂଯୁକ୍ତ ସଂସାରଟିଏ ହିଁ ତାର ଶ୍ରମକୁ ତପସ୍ୟାର ମହାନ୍ ଶକ୍ତି ରୂପେ ସଂସାର ହାତରେ ସମର୍ପିଦିଏ ।

ସଂସାର ଯାହା ଦିଏ, ଯାହା ନ ଦିଏ, ସମସ୍ତ ଆସେ ସବୁ ହିସାବ ଓଲଟି ଯାଏ । ମନେହୁଏ ଯାହା କରିଛୁ, ହୁଏତ କରିବାର ନ ଥିଲା; ଯାହା କରିନାହିଁ ବୋଧହୁଏ ତାହା ହିଁ କରିବାର ଥିଲା । ପ୍ରତ୍ୟେକକୁ ମନେହୁଏ, କିଛି ଅଲଗା ହୋଇଥାନ୍ତା ବୋଧହୁଏ, ନ ହେଲେ ଅପୂର୍ଣ୍ଣତାର ଅନୁଭବ କାହିଁକି ?

ମାତ୍ର ସଂସାରରେ ସତରେ କଣ କରାଯାଏ ନ ଯାଏ—ବୋଧହୁଏ ବଡ଼ କଥା ନୁହେଁ । ସାର କଥା—ଯାହା ବି ହୋଇଥାଉ, ତା ଆଧ୍ୟାତ୍ମିକତାର ସ୍ପନ୍ଦନ-ଭୂମିରୁ ଉଚ୍ଚାରିତ ହୋଇଥିଲେ ସଂସାରର କାମରେ ଲାଗେ । ସେ କାମଟି ତାର ଉଦ୍‌ବର୍ତ୍ତନ-ଦ୍ରବ୍ୟ ରୂପାନ୍ତର । ସେତିକି ବୋଧହୁଏ ସଂସାରରେ ସାର୍ଥକ କର୍ମ । ସେତିକିଟି କିନ୍ତୁ ସହଜରେ କରିହୁଏ ନାହିଁ । ଅନେକ କର୍ମ-ଯଜ୍ଞର ଆୟୋଜନ ବ୍ୟସ୍ତତା ଓ କୋଳାହଳରେ ଓଁ କାରଟି ଠିକ୍ ଉଚ୍ଚାରିତ ହୋଇପାରେ ନାହିଁ । ଫୁଲ ଫଳ ଘୃତ ସମିଧ ଦୁଗ୍ଧ ମଧୁ ପ୍ରଭୃତି ଷୋଡ଼ଶ ଉପଚାର ସତ୍ତ୍ୱେ ସୋମ-ଅମୃତର ପ୍ରସ୍ତୁତି କୌଶଳଟି ଜଣା ନ ଥାଏ ବୋଲି ପୂର୍ଣ୍ଣାହୁତିର ମାହେନ୍ଦ୍ରକ୍ଷଣଟି ସଂଭବ ହୁଏ ନାହିଁ । ତଥାପି ସଂସାର-ଅହରହ ଯଜ୍ଞଶାଳାଟିଏ ସଜାଡ଼ିଚାଲିଛି, କାଳେ କେହି ସେଠି ମୁହୂର୍ତ୍ତେ ହୋତାର ଆସନରେ ବସିପଡ଼ି ଜୀବନର ମଧୁରସକୁ ସୃଷ୍ଟି ଉଦ୍ଦେଶ୍ୟରେ ଥରୁଟିଏ ଘୃତାର୍ଚ୍ଚିତ କରିଦେବ ବୋଲି ।

●

# ଧର୍ମ ଓ ଆଧ୍ୟାତ୍ମିକତା

ଧର୍ମ ଓ ଆଧ୍ୟାତ୍ମିକତା : ଜୀବନର ଦୁଇଟି ଘନିଷ୍ଠ ବିନ୍ଦୁ । ଗୋଟିଏ ଜିଜ୍ଞାସା, ଅନ୍ୟଟି ଜୀବନ । ଗୋଟିଏ ଅନ୍ୱେଷଣ, ଅନ୍ୟଟି ଉପଲବ୍ଧି । ଗୋଟିଏ ଗୋଲକ ଧନ୍ଦା, ଅନ୍ୟଟି ସହଜ ପ୍ରତ୍ୟୟ ।

ଧର୍ମ ବାହ୍ୟ, ବିବିଧ, ବିଭିନ୍ନ ଓ ପ୍ରତିନିଧିମୂଳକ । ନିଜଧର୍ମ, ପରଧର୍ମ, ପୁରୁଷଧର୍ମ, ସ୍ତ୍ରୀଧର୍ମ, ଜୀବଧର୍ମ, କୁଳଧର୍ମ ଇତ୍ୟାଦି । କର୍ମ ଜୀବନ ସହିତ ଜଡ଼ିତ ଏଇ ଧର୍ମର ସମ୍ବନ୍ଧ, କର୍ମ ଓ ଧର୍ମର ସଂପର୍କ ପ୍ରତିଷ୍ଠା । ଧର୍ମ ପାଳନରେ ବିଭେଦ ଓ ବିଭାଜନରୁ ଧର୍ମର ସଂଜ୍ଞା ନିରୂପଣ କରାଯାଇଛି । ତେଣୁ ଏହା ସଂଜ୍ଞା-ସୀମିତ । ଯୁଗଧର୍ମ, ଦେଶଧର୍ମ ରୂପେ ଖଣ୍ଡିତ । ସ୍ଥାନ, କାଳ, ବ୍ୟକ୍ତି ଏ ତିନୋଟି ଲକ୍ଷ୍ମଣ ରେଖାକୁ ଅତିକ୍ରମ କରି ନ ପାରିଲେ ଧର୍ମ ନିଜ ପାଖେ ଆବଦ୍ଧ ରହିଯାଏ । ଆଧ୍ୟାତ୍ମିକତାର ଏଇ ରେଖାବନ୍ଧନ ନାହିଁ । ତାର ଭିନ୍ନଧର୍ମ କିଛି ନାହିଁ । ନିଜେ ସେ ନିଜର 'ସ୍ୱଧର୍ମ' ।

ଧର୍ମ ଏକ ଅନୁଶାସନ, ଆଧ୍ୟାତ୍ମିକତା କେବଳ ଏକ ଆବେଦନ । ଧର୍ମର ଅନୁଶାସନ ବାହାରୁ । ଆଧ୍ୟାତ୍ମିକତାର ଆବେଦନ ଅନ୍ତର୍ଚେତନାରୁ । ମର୍ମଦାହୀ ବେଦନା ରୂପେ ଅନ୍ତରରେ ତାର ସଞ୍ଚାର । ବ୍ୟକ୍ତି ଧର୍ମଦୃଷ୍ଟିରୁ ଯେତେ ହୀନକର୍ମ, ଅନୁଚିତ ଭାବନାରେ ଆବଦ୍ଧ ରହିଥିଲେ ବି ଆଧ୍ୟାତ୍ମିକତାର ବେଦନା କଣ୍ଟାଭଳି ତା ଭିତରକୁ କେଞ୍ଚିବାରେ ଲାଗିଥାଏ । ଦର୍ପଣଟିଏ ହୋଇ ତା ଆଗରେ ଝୁଲୁଥାଏ । ଆଧ୍ୟାତ୍ମିକତାର କିଛି ପ୍ରଶ୍ନ ନାହିଁ । ନିଜେଇ ସେ ପ୍ରଶ୍ନଟିଏ ହୋଇ ଅହରହ ଚିତ୍ତ ଆନ୍ଦୋଳିତ କରୁଥାଏ । ନିଦ ଭଙ୍ଗାଇ ଦେଉଥାଏ । ସର୍ବଶେଷ ଦୁଃଖପରେ ବି ଆନନ୍ଦର ପ୍ରତିଶ୍ରୁତିଟି ଶୁଣାଇ ଦୁଃଖତର ପୀଡ଼ାରେ ଜର୍ଜରିତ କରି ରଖୁଥାଏ । ବ୍ୟକ୍ତିକୁ ସେ ଦୁଃଖ ଭୋଗାଇଦିଏ, ଦୁଃଖ କଣ ଚିହ୍ନାଇ ଦିଏ । ଦୁଃଖକୁ ସୁଖରେ ପାଲଟାଇ ଦେବାର ରହସ୍ୟ ଖୋଜିବାକୁ ପ୍ରବର୍ତ୍ତାଇ ଦିଏ । ଅନ୍ତଃହୀନ ଜନ୍ମ ଜନ୍ମାନ୍ତରର ଦୁଃସହ ଜୀବନଯାତ୍ରା ଶେଷରେ ସବୁ ଖୋଜାର ଶେଷ ସେ ନିଜେ ବୋଲି ଶୁଣାଇ ଦେଉଥାଏ ।

ଧର୍ମର ଭାଷା ଅଛି । ବେଶଭୂଷା ଅଛି । ନିବାସ ଅଛି । ଶାସ୍ତ୍ର ମନ୍ତ୍ର ଗ୍ରନ୍ଥ ଅଛି । ତାର ପୂଜାର ପୀଠ ଅଛି । ପୂଜାପାଠର ସମୟ ଅଛି । ଉପାସନାର

ଗୀତ ଅଛି । ଆଧ୍ୟାତ୍ମିକତା ପାଖେ ଏ ସବୁ କିଛିର ବାଧ୍ୟବାଧ୍ୟକତା ନାହିଁ । ତାର କଣ୍ଠ ମୌନ, ସ୍ୱର ନିଃସ୍ୱନ । ଧର୍ମ ଏକ ବାର୍ତ୍ତା-ପ୍ରଚାରିତ ହୁଏ, ଆଧ୍ୟାତ୍ମିକତାର ବାଣୀ ହୃଦୟରେ ସଞ୍ଚାରିତ । ଆଧ୍ୟାତ୍ମିକତାର ସ୍ୱର ମାଇକ୍‌ରେ ବାଜେ ନାହିଁ । ବେଷ୍ଟଣୀ ଆଲୁଅରେ ଝଟକେ ନାହିଁ । କାଠବାଡ଼ର ଶୋଭା ସାମଗ୍ରୀ ସାଜେ ନାହିଁ । ତାର ସ୍ୱର ଧୀର ମୂର୍ଚ୍ଛନା ହୋଇ କେଉଁ ଗମ୍ଭୀର ନୀରବତାରୁ ଗୁଞ୍ଜରି ଆସେ । ଅନ୍ଧାରିଆ ମନ ତଳୁ ଦୀପଶିଖାଟିଏ ହୋଇ ଜଳି ଉଠେ । ତାର ସ୍ୱରରେ କୃଷ୍ଣଙ୍କ ମୋହନବଂଶୀ ବାଜେ, ବୁଦ୍ଧଙ୍କ ଅଭୟ କରୁଣାର ସାନ୍ତ୍ୱନା ବାଣୀ ଶୁଣାଯାଏ, ଯୀଶୁଙ୍କ ପ୍ରେମ କୋମଳ ଆଶ୍ୱାସନା ଉଚ୍ଚାରିତ ହୁଏ । ମହମ୍ମଦଙ୍କ ଶକ୍ତି ଓ ସାହସର ଦୃପ୍ତ ନିର୍ଘୋଷ ଶୁଭେ ।

ଆଧ୍ୟାତ୍ମିକତା ଅନ୍ତଃସତ୍ତାର ନିଜ ସତ୍ୟ । ତାକୁ ସେ ନିଜ ପାଖେ ନିଜକୁ କେବଳ ବାଢ଼ିଥାଏ । ଶାସ୍ତ୍ର ପୁରାଣ ବାଇବେଲ କୋରାନ୍ ପଣ୍ଡା ପାଦ୍ରୀ ମୁଲ୍ଲା ମହନ୍ତ ସେଠି କେବଳ ମଧ୍ୟବର୍ତ୍ତୀ, ଔପଚାରିକ ।

ଧର୍ମ ବାହ୍ୟ, ଆଚାରିକ । ତାର ପ୍ରମାଣ ଅନ୍ୟ ପାଖେ, ସମାଜ ସଂସାର ଉପାସନା ପୀଠରେ ଦେବାକୁ ହୁଏ । ଆଧ୍ୟାତ୍ମିକତାର ସନ୍ଧାନ ନିଜଠାରେ । ଧର୍ମର ଦାବୀରେ ରକ୍ତପାତ, କ୍ରୁସେଡ୍ ଆଉ ଜେହାଦ୍ । ମାତ୍ର ଆଧ୍ୟାତ୍ମିକତା ଅନ୍ୟର ରକ୍ତାକ୍ତ ବେଦନାକୁ ନିଜ ରକ୍ତକଣାରେ ଅନୁଭବ କରେ । ବଳଦ ପିଠିରେ ଚାବୁକର ମାଡ଼ରେ ଶ୍ରୀରାମକୃଷ୍ଣଙ୍କ ଦେହରୁ ରକ୍ତ କ୍ଷରେ । ଆଧ୍ୟାତ୍ମିକ ବ୍ୟକ୍ତିଟି ବିଷ୍ଣୁସେବକ, ଯୀଶୁ ଆରାଧକ କି ମହମ୍ମଦ ଅନୁଗତ ହେଉ ନ ହେଉ, ସେ କିନ୍ତୁ ବୈଷ୍ଣବ, ଖ୍ରୀଷ୍ଟିୟାନ, ମୁସଲମାନ । ସେ ଯଥାର୍ଥ ଭାଗବତ : ପରପୀଡ଼ାକୁ ମର୍ମପୀଡ଼ା ରୂପେ ଭୋଗକରେ ।

ଶାସ୍ତ୍ରପାଠ, ଧର୍ମାଚରଣ, ପୂଜା ନମାଜ କି ଜନସେବା ଜୀବନର ତିନି ଭାଗକୁ ଅଧିକାର କରି ରଖିଥିଲେ ବି ହୃଦୟର ଗୋଟିଏ ଭାଗ ତଥାପି ଖାଲି ପଡ଼ି ରହିଥାଏ ଅତୃପ୍ତ ମରୁଭୂମିର ଜଳତୃଷାରେ ଛଟପଟ ହୋଇ ଆକାଶର ଯେଉଁ ବର୍ଷାବିନ୍ଦୁଟିକୁ ଚାହିଁ, —ତାହା ଆଧ୍ୟାତ୍ମିକତାର ।

ମନ-ମୀନ ଧର୍ମ ସମୁଦ୍ରରେ ହଜାରେ ପହଁରୁଥାଉ, ଚାତ-ଚାତକର ଆକାଶରୁ ଚୁହାଏ ମେଘ-ଜଳ ଲୋଡ଼ା ।

ଧର୍ମ ମଧୁଚକ୍ର, ଆଧ୍ୟାତ୍ମିକତା ମଧୁ-ସ୍ୱାଦ । ଶାସ୍ତ୍ରପାଠ ମଧୁଚକ୍ର ରଚନାର କୌଶଳ ବିଧି ବତାଇଦିଏ, ସ୍ୱାଦର ସମ୍ବାଦ ଦିଏନା । ଧର୍ମଶାସ୍ତ୍ର ସମୁଦ୍ର ମନ୍ଥନ କରେ, ବେଳେ ବେଳେ ସଂଶୟ ବିଷରେ ଘାରିଦିଏ । ଆଧ୍ୟାତ୍ମିକତା ସେ ମନ୍ଥନଜାତ ଅମୃତ କଳସୀ ।

ଆଧ୍ୟାତ୍ମିକତା ଧର୍ମର ଭିତ୍ତିଭୂମି, ଅନୁପୂରକ, ଅନ୍ତଃରସ । କୌଣସି ତତ୍ତ୍ୱବିଶେଷ ନୁହେଁ, ସବୁ ତତ୍ତ୍ୱର ସାର ନିର୍ଯାସ । ମନନ ନୁହେଁ, ଦର୍ଶନ ନୁହେଁ । କେବଳ ଅନ୍ତରାନୁଭବ ଯାହାକୁ ନେଇ ଧର୍ମ ଦର୍ଶନର ଯାବତୀୟ ତତ୍ତ୍ୱବିଳାସ । ଧର୍ମ ଅର୍ଥ କାମ ମୋକ୍ଷ—ଏ ଚତୁଃବର୍ଗ ସିଦ୍ଧିର ବାହାରେ ତଥାପି କିଛି ବାକି ରହିଯାଏ, ଯାହା ପୌରୁଷ ସାଧନ କରିପାରେ ନାହିଁ, ପୁରୁଷକାରର ବର୍ଜନ ପରେ ଉପଲବ୍ଧ ହୁଏ ।

ଆଧ୍ୟାତ୍ମିକତାରେ ଆତ୍ମା ହିଁ ସାର୍ବଭୌମ । ଧର୍ମରେ ପ୍ରଭୁ ଅଛନ୍ତି, ତାଙ୍କର ପ୍ରଭୁତ୍ୱ ଅଛି । ତାଙ୍କ ସହ ଦାସତ୍ୱର ସଂପର୍କ ଅଛି । ଦାସ ପ୍ରତି ଅନୁଶାସନ ଅଛି । ଆଧ୍ୟାତ୍ମିକତାରେ ପ୍ରଭୁ ନାହାନ୍ତି, କେବଳ ପରମାତ୍ମା । ଶାସକ ନୁହଁନ୍ତି ପ୍ରେମିକ; ଦଣ୍ଡ ଦିଅନ୍ତି ନାହିଁ, ଅଭିମାନ ସହନ୍ତି । ପଦ ପ୍ରହାରକୁ ହୃଦୟ ଲାଞ୍ଛନ କରନ୍ତି । ସେ ଆତ୍ମାକୁ ତ୍ୟାଗକରି ଯାଆନ୍ତି ନାହିଁ, ଅନ୍ତରାତ୍ମାରେ ଜାଗ୍ରତ ରହିଥାନ୍ତି । ଅନ୍ତଃସ୍ୱରୂପରେ ଏଠି ସବୁ ଦିବ୍ୟ, ମହାନ୍ ହେବାର ସାମର୍ଥ୍ୟଯୁକ୍ତ, ସେଇ ପ୍ରେରଣା ଓ ଶକ୍ତି ହୋଇ ନିରନ୍ତର ସତ୍ତାକୁ ଉଦ୍ବେଳିତ କରୁଥାନ୍ତି । ଧର୍ମର ବିଗ୍ରହରେ ଲକ୍ଷ କୋଟି ପାପର ଭୟ, ଆଧ୍ୟାତ୍ମିକତାରେ କେବଳ ଗୋଟିଏ ବେଦନା—ମଣିଷ ଉପରୁ ବିଶ୍ୱାସ ହରାଇବା, ଦିବ୍ୟତ୍ୱର ସମ୍ଭାବନା ଉପରୁ ଆସ୍ଥା ହରାଇବା । ଅପରକୁ ପାପୀ, ନ୍ୟୂନ ବିଚାରିବା, ନିଜକୁ ଅଧର୍ମ ବିଚାରି ଗ୍ଲାନି-ପୀଡ଼ିତ ହେବା ଆଧ୍ୟାତ୍ମିକତାର ସର୍ବଶେଷ ବେଦନା । ସେଇଥିପାଇଁ ଧର୍ମ-ବିଗ୍ରହରେ 'ବିଧର୍ମୀ' ବୋଲି ଶବ୍ଦଟିଏ ଅଛି । ଆଧ୍ୟାତ୍ମିକତାର ବିରୋଧୀ ଭାବଯୁକ୍ତ ଶବ୍ଦ କିଛି ନାହିଁ ।

ଧର୍ମର ସଂସ୍ଥା ଥାଏ, ସଙ୍ଘ ଥାଏ । ପ୍ରତିନିଧି ଥାନ୍ତି । ଧର୍ମ ପରିଚାଳକ ଗଢ଼େ । ପଣ୍ଡା, ପୂଜକ, ପାଦ୍ରୀ, ମୁଲ୍ଲାଙ୍କ ଆଧିପତ୍ୟ ସ୍ୱୀକାର କରେ । ଆଧ୍ୟାତ୍ମିକତାରେ ପୁରୋହିତ ନ ଥାନ୍ତି, ପ୍ରଫେଟ୍ ଥାନ୍ତି । ସେମାନେ ଅନୁଶାସନ ଦିଅନ୍ତି ନାହିଁ, ଅନୁପ୍ରାଣିତ କରନ୍ତି । ଧର୍ମର ଦ୍ରୋହୀ ଥାନ୍ତି । ତାଙ୍କର ଶାସ୍ତିବିଧାନ

ଥାଏ, ଆଧ୍ୟାତ୍ମିକ-ଦ୍ରୋହୀ କେହି ହୋଇପାରେନା । ମୃତ୍ୟୁର ଭୟ, ନରକର ଭୟ—ଧର୍ମର ଅମୋଘ ଶାସ୍ତି । ଆତ୍ମ-ହୀନ ହେବାର ସନ୍ତାପ ହିଁ ଆଧ୍ୟାତ୍ମିକତାର ଏକମାତ୍ର ଶାସ୍ତି । ପଶ୍ଚାତ୍ତାପ, ଅନୁଶୋଚନା, ଆଖିଲୁହରେ ତାର ବେଦନାର ପ୍ରାୟଶ୍ଚିତ୍ତ ।

ଧର୍ମ ଅନେକ । ତାର ପୂଜିତ ଈଶ୍ୱରଙ୍କ ନାମ ରୂପ ଭିନ୍ନ । ଆଧ୍ୟାତ୍ମିକତାର ଶ୍ରଦ୍ଧେୟ ପରମେଶ୍ୱରଙ୍କର ଗୋଟିଏ ଅଭେଦ ଅନୁଭବ ବିସ୍ତାର । କିଛିର ଅସ୍ୱୀକାର ନାହିଁ, ବର୍ଜନ ନାହିଁ । ଧର୍ମରେ ବହୁ ଦ୍ୱନ୍ଦ୍ୱ, ନାମ : ଅନାମ, ରୂପ : ଅରୂପ, ଜ୍ଞେୟ : ଅଜ୍ଞେୟ । ଆଧ୍ୟାତ୍ମିକତା ନିର୍ଦ୍ୱନ୍ଦ୍ୱ । ରୂପରୁ ଅରୂପ ପୁଣି ଅରୂପରୁ ରୂପ ସବୁ ତା ପାଇଁ ଅପରୂପ ।

ଧର୍ମର ବିପରୀତ ଅଛି—ଅଧର୍ମ । ପୁଣି ଅହିଂସାର ଧର୍ମ, ହିଂସାର ଧର୍ମ, ପ୍ରତିଶୋଧର ଧର୍ମ, କ୍ଷମାର ଧର୍ମ ଅନେକ ଦ୍ୱନ୍ଦ୍ୱରେ ତାହା ନିଜେ କ୍ଷୁଭିତ । ଆଧ୍ୟାତ୍ମିକତାରେ ବିରୋଧ ନାହିଁ, ସପକ୍ଷ-ବିପକ୍ଷ ନାହିଁ । ଆଧ୍ୟାତ୍ମିକତାର ଆକୃତି, ପ୍ରକୃତି, ଗୁଣ ଅଧିକେ ସମସ୍ତଙ୍କ ଭିତରେ ରହିଛି, ଏତିକ ତାର ନିଶ୍ଚିତ ସିଦ୍ଧାନ୍ତ । ସେଇଥିପାଇଁ ଯେଉଁ ସତ୍ୟକୁ ଗ୍ରହି ମଣିଷ ବିଧର୍ମୀ ବୋଲାଏ, ପାଷାଣ୍ଡ କାଫେର ବା ହିଦେନ୍ ହୋଇଯାଏ । ତାହା ଯେତେ ସବଳ ଧର୍ମର ପ୍ରତିପାଦ୍ୟ ହେଉନା କାହିଁକି, ଆଧ୍ୟାତ୍ମିକତାର ରୂପ ପରିଚୟ ନୁହେ । ଆଧ୍ୟାତ୍ମିକତାର ସତ୍ୟ ଧର୍ମର ସତ୍ୟଠାରୁ ବୃହତ୍ତର, ପ୍ରଶସ୍ତତର, ଊର୍ଦ୍ଧ୍ୱତର । ଆଧ୍ୟାତ୍ମିକତାକୁ ବାଦଦେଇ, ଅତିକ୍ରମ କରି ଆଉ କିଛି ମହତ୍ତର ସତ୍ୟ ନାହିଁ ।

ଜଣେ ଧର୍ମଚ୍ୟୁତ ହୋଇପାରେ, ମାତ୍ର କେହି ଆଧ୍ୟାତ୍ମିକତାରୁ ବିଚ୍ୟୁତ ନୁହନ୍ତି । ଧର୍ମ ଏକ ସାମନ୍ତ ଯାହା ଜଣକୁ ନିଜ ରାଜ୍ୟରୁ ନିର୍ବାସିତ କରିପାରେ । ଆଧ୍ୟାତ୍ମିକତା ଈଶ୍ୱରଙ୍କର ସାମ୍ରାଜ୍ୟ ଯାହାର ବାହାରେ ଜଗତ ନାହିଁ । ଧର୍ମର ଇଲାକା ଅଛି—ସ୍ୱର୍ଗ, ମର୍ତ୍ତ୍ୟ, ନରକ । ପାପ ପୁଣ୍ୟ ପାଇଁ ଅଲଗା ଅଲଗା ଇଲାକା । ଆଧ୍ୟାତ୍ମିକତାର ଇଲାକା-ଭେଦ ନାହିଁ । ଆତ୍ମା ହିଁ ତାର ଏକମାତ୍ର ଇଲାକା, ସେ ଇଲାକାରୁ କାହାର ନିର୍ବାସନ ଘଟେ ନାହିଁ । କେବଳ ସ୍ତର-ଚ୍ୟୁତି ଘଟେ । ଧର୍ମ ବିଚାର କରେ, ଆଧ୍ୟାତ୍ମିକତା ବୁଝାମଣା ଖୋଜେ । ତାର ବୁଝିବାରେ କିଛି ଭଲ ବା ମନ୍ଦ ନୁହେଁ; କେବଳ ଚେତନାର ସ୍ତରଭେଦ । କେହି ଗଭୀର, ପ୍ରସାରିତ ଆଲୋକିତ ଚେତନାସ୍ତରର, କେହି ବା ଅପେକ୍ଷାକୃତ

ଅପ୍ରସାରିତ ଅନ୍ଧାରିଆ ସ୍ତରର । ନିମ୍ନତରରୁ ଉଚ୍ଚତରର, ବିନ୍ଦୁରୁ ସିନ୍ଧୁର ବିଶାଳ ବଳୟ; ବିରାଟ ସିଢ଼ି, ବିପୁଳ ସମୁଦ୍ର ଓ ଉତ୍ତୁଙ୍ଗ ଆକାଶ । ସବୁ ଖଣ୍ଡିତା ସେଠି ବିଶାଳତାର ସମ୍ଭାବନାଯୁକ୍ତ, ସବୁ ସାମୟିକତା ସେଠି ଶାଶ୍ୱତର ପ୍ରତିଶ୍ରୁତି ପୂର୍ତ୍ତି, ସବୁ ଅକ୍ଷମତା ପୂର୍ଣ୍ଣତାର ସାମର୍ଥ୍ୟଯୁକ୍ତ ।

ଧର୍ମର ପଥ ଶାସ୍ତ୍ର ନିର୍ଦ୍ଦିଷ୍ଟ, ଆଧ୍ୟାତ୍ମିକତାର ସହଜ ସିଦ୍ଧାନ୍ତ, ଅନ୍ତରର ସୂର୍ଯ୍ୟାଲୋକ ପ୍ରଦୀପ୍ତ । ଆକାଶରେ ସୂର୍ଯ୍ୟ ଉଠିଲେ ଜୁଳଜୁଳିଆ ଆଲୋକ ଦୀପ ଆଲୁଅ, ବିଜୁଳି ଆଲୁଅ ବି ଅବାନ୍ତର ହୋଇଯାଏ । ଚନ୍ଦ୍ର ତାରା ବି ଲୋଡ଼ାପଡ଼ନ୍ତି ନାହିଁ । ଆଉ ହଜାର ଝାଡ଼ବତୀ, ହଜାର ପାୱାର ବଲ୍ ଜଳୁଥିଲେ ବି ରାତିର ଅନ୍ଧାରରେ ନିଶ୍ଚିତ ଭରସାର ଆଲୋକିତ ମୁହୂର୍ତ୍ତଟିଏ ସୃଷ୍ଟି ହୁଏ ନାହିଁ । ଧର୍ମର ଆଲୋକ ଦୀପର ହେଉ କି କ୍ୟାଣ୍ଡଲର ହେଉ, ତଥାପି ସେ ବାହ୍ୟ; ଜଳେ, ନିଭେ, ତାତେ, ଥଣ୍ଡା ହୁଏ । ଆଧ୍ୟାତ୍ମିକତାର ସୂର୍ଯ୍ୟ-ଦୀପ ଚିର ଦୀପ୍ୟମାନ, ତାପମାନ । ତା ପାଇଁ ଚେତନାର ଆକାଶରେ ସନ୍ଧ୍ୟାର ଦିଗନ୍ତ କେବେ ବି ଆସେନାହିଁ ।

ଧର୍ମର ଲକ୍ଷ୍ୟ ମୋକ୍ଷ, ଧର୍ମର ଉପାର୍ଜନ ପୁଣ୍ୟ । ଆଧ୍ୟାତ୍ମିକତା ନିଜେ ନିଜର ଅର୍ଜିଳ । ସବୁ ଧର୍ମର ପୁଣ୍ୟଫଳ ମିଶି ଯେଉଁ ଉପାର୍ଜନ, ତାହା ହିଁ ଆଧ୍ୟାତ୍ମିକତା । ଆଧ୍ୟାତ୍ମିକତା ସବୁ ଧର୍ମର ମୂଳପ୍ରେରଣା, ପ୍ରାଣ ପ୍ରବାହ, କର୍ମପନ୍ଥା ଓ ଆଚରଣ ବିଧାନ । ଆଧ୍ୟାତ୍ମିକତା ସବୁ ଧର୍ମବୃକ୍ଷର ମୂଳଚେର, ଡାଳପତ୍ର, ଫୁଲଫଳ, ରଙ୍ଗ, ରସ, ବାସ । ଆଧ୍ୟାତ୍ମିକତା ଉପେକ୍ଷା କରିବା ମୁହୂର୍ତ୍ତରେ ଧର୍ମ ଅଧର୍ମ ।

ଧର୍ମ ଆଗ୍ରହରେ ତିଷ୍ଠି ରହେ । ଆଧ୍ୟାତ୍ମିକତା ବିଶ୍ୱାସରେ ବଞ୍ଚେ । ଧର୍ମ ସଂଶୟଯୁକ୍ତ, ଆଧ୍ୟାତ୍ମିକତା ପ୍ରତ୍ୟୟ-ଦୀପ୍ତ । ଧର୍ମ ଭକ୍ତିର ଭୂମି ଲୋଡ଼େ, ଆଧ୍ୟାତ୍ମିକତା ସହଜ ପ୍ରୀତିରେ ଚିତ୍ତରେ ଲାଗି ରହିଥାଏ । ଧର୍ମର ସଂଶୟ ତାର ଦେବତାଙ୍କୁ ହାତପାଦ ଖଣ୍ଡିଆ କରି ରଖିଦିଏ । ଆଧ୍ୟାତ୍ମିକତାର ବିଶ୍ୱାସରେ ହାତପାଦଖଞ୍ଜ ମୂର୍ତ୍ତି ବି ସୁନ୍ଦର ଶୋଭନପ୍ରିୟ ପରମ ହୋଇ ଉଜଳି ଉଠନ୍ତି । ବହୁ ଶାସ୍ତ୍ର, ଗ୍ରନ୍ଥ, ତର୍କ ସତ୍ତ୍ୱେ ଧର୍ମର ସଂଶୟ ଅମାପ, ପ୍ରଶ୍ନ ଅସୁମାରି । ଆଧ୍ୟାତ୍ମିକତାର କିଛି ପ୍ରଶ୍ନ ନାହିଁ । ହୃଦୟ ତାର ପୋଥି, ଅନୁଭବ ତାର ଶାସ୍ତ୍ରଜ୍ଞାନ । ଶ୍ରଦ୍ଧା ତାର ପୁରୋହିତ । ଜୀବନ ସ୍ୱୟଂ ଦେବାଳୟ । "The sky

is my book: rustling leaves my poems." (Sri Aurobindo) ତା ପାଇଁ ତେଣୁ ଶୂନ୍ୟ ଓ ପୂର୍ଣ୍ଣର ତଫାତ୍ ବସ୍ତୁର ଉଠେନାହିଁ । ଉଭୟ ଶବ୍ଦକୁ ସେ ବାଗ୍ ବିଳାସ ମଣେ । ସେ କେବଳ କୋଟିଏ ଅନୁଭବକୁ ଜାଣେ, ନିର୍ବାଧତା । ତାର ଚେତନାରେ ବିଶ୍ୱବ୍ରହ୍ମାଣ୍ଡର ନିର୍ବାଧ ବିସ୍ତାର । ଅସ୍ତି ମାର୍ଗ ଦେଇ, ନାସ୍ତି ମାର୍ଗ ଦେଇ, ପାଇ, ହରାଇ, ରକ୍ତ ଝରାଇ, ଫୁଲ ଫୁଟାଇ ସେ କେବଳ ଗୋଟିଏ ଅବସ୍ଥାକୁ ପାଏ—ଭାବସମାଧିସ୍ଥରେ ତଲ୍ଲୀନତା ।

ଆଧ୍ୟାତ୍ମିକତାର ନିର୍ଦ୍ଦିଷ୍ଟ ଭାଷା, ନିର୍ଦ୍ଦିଷ୍ଟ ବେଶଭୂଷା ନାହିଁ ବୋଲି ତାର ... -ଭାବ-ଆବେଦନ ଯେକୌଣସି ଭାଷାରେ ଉଚ୍ଚାରିତ ହୋଇପାରେ, ଯେ କୌଣସି ପୋଷାକରେ ଗାତ୍ର-ଆଚ୍ଛାଦିତ ହୋଇପାରେ । ତାର ଅନ୍ତରବେଦିରେ ଅହରହ ଯେ ପ୍ରୀତି ଯଜ୍ଞ ଚାଲିଥାଏ, ସେଠାରେ ସବୁ ନାମକୁ ଏକ ନାମ କରି ସେ ଅନାମର ମୁଗ୍‌ଧ-ମନ୍ତ୍ର ଜପି ଚାଲିଥାଏ । ସେ ମଣିଷର ସତ୍ୟ ଓ ଦେବତାର ସତ୍ୟରେ ଅମେଳ ଦେଖେନାହିଁ । ଏକ ବୃହତ୍ତର ସୃଷ୍ଟିର ସତ୍ୟରେ ମଣିଷ, ଦେବତା ଓ ଅନ୍ୟାନ୍ୟ ସକଳ ଜୀବସୃଷ୍ଟିର ନିଜ ନିଜ ସ୍ଥାନର ମହତ୍ତ୍ୱରେ ବିଶ୍ୱାସ କରେ । ତାପାଇଁ ତେଣୁ ପୁଣ୍ୟତିଥିରେ ତୀର୍ଥସ୍ଥାନ ଲୋଡ଼ାପଡ଼େ ନାହିଁ । ସବୁ ତିଥି ତାପାଇଁ ପୁଣ୍ୟତିଥି, ସବୁ ସ୍ଥଳ ତୀର୍ଥସ୍ଥଳ । ସବୁ ବେଳ ବିଭୁପ୍ରାଣତାର ବେଳ ।

କୌଣସି 'ନାହିଁ' ଶବ୍ଦକୁ ସେ ବୁଝେ ନାହିଁ । ବ୍ୟର୍ଥତା କଣ ଜାଣେ ନାହିଁ । ତା ପାଇଁ ସବୁକିଛି ଅର୍ଥବନ୍ତ । ସୃଷ୍ଟି ପରି ବିନାଶ ମଧ୍ୟ ସତ୍ୟର ଆଉ ଏକ ଅଭିବ୍ୟକ୍ତି । ତାର ଉପାସ୍ୟ ସ୍ୱୟଂ ସତ୍ୟ-ସୃଷ୍ଟି ଓ ବିନାଶ ଯାର ସାମଗ୍ରିକ ରୂପପ୍ରକାଶ । ଆନନ୍ଦ ତାର ଏକମାତ୍ର ଉପଲବ୍‌ଧି; ଲବ୍‌କାମ ହେବାର ସୁଖ ନୁହେଁ, ପ୍ରାପ୍ତିଅପ୍ରାପ୍ତି—ବୋଧ ବିରହିତ ପରିତୃପ୍ତି । ସେ ଉପଲବ୍‌ଧିରେ ବେଦନା ଅଛି, ଲୁହ ସଜଳତା ଅଛି, ପୀଡ଼ା ମର୍ମଦାହ ବି ଅଛି । ନାହିଁ କେବଳ ନିରାଶା । ମରୁଭୂମିରେ ବି ମରୁଦ୍ୟାନ ଓ ମରୀଚିକା ଥିବାର ସତ୍ୟ ତାକୁ ସେ ମାନିନିଏ, ମାତ୍ର ମରୁତୃଷାର ସତ୍ୟତା ପାଖେ ମରୁଝରର ସଂଭାବନାକୁ ସେ ବିସର୍ଜି ପାରେନା । ତା ପାଇଁ କେହି ମିଥ୍ୟା ନୁହନ୍ତି । ଗୋଟିଏ ସତ୍ୟ ହେଲେ ଅନ୍ୟଟି ସତ୍ୟର ଛାଇ । ହତ୍ୟାଭାସର ମୃଗତୃଷା ପାଖେ ମରୁଝରର ସତ୍ୟତା ଧ୍ରୁବ ଅନିବାର୍ଯ୍ୟ ।

ଧର୍ମର ଯାବତୀୟ ଚିନ୍ତା ମୂଳରେ ଜୀବନର ଦୁଇଟି ଘଟଣା ଜଡ଼ିତ, ପ୍ରେମ ଓ ମୃତ୍ୟୁ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ପ୍ରେମ ସଂପର୍କର ରୂପ ତାର

ଔଚିତ୍ୟବୋଧ ଏବଂ ମୃତ୍ୟୁ ସହ ଜୀବନର ସଂପର୍କରେ ନୈରାଶ୍ୟବୋଧ ତଥା ମୃତ୍ୟୁ ପର ଅଜଣାସ୍ଥିତି ସମ୍ପର୍କିତ ଆତଙ୍କବୋଧ ଧର୍ମରେ ଯାବତୀୟ ଭାବ-ସଂକଟ ସୃଷ୍ଟି କରିଥାଏ । ଧର୍ମ ଉଭୟ କ୍ଷେତ୍ରରେ ମଣିଷକୁ ଯଥାର୍ଥ ମାର୍ଗ ଦେଖାଇ ନ ପାରିଲେ, ଯଥାର୍ଥ ରୂପରେ ସୁରକ୍ଷିତ ନହେଲେ ତାକୁ ଅସୁସ୍ଥ କରେ, ବିକୃତ କରେ, ନ୍ୟୁରୋଟିକ୍ କରେ । ଆଧ୍ୟାତ୍ମିକତା ସବୁ ନ୍ୟୁରୋସିସ୍‌ର ଚିକିତ୍ସା, ପ୍ରତିଶେଧ ଓ ଔଷଧ । ଧର୍ମ ଏକ ବୈଦ୍ୟଭୂଲ୍ୟ, ଚିକିତ୍ସାରେ ଭୁଲ ତ୍ରୁଟି ହେଲେ ବ୍ୟାଧି ଭୟାନକ ହୁଏ, ଆଧ୍ୟାତ୍ମିକତା ସ୍ୱୟଂ ଔଷଧ, ବ୍ୟାଧି ଦୂରକରେ । ଆଧ୍ୟାତ୍ମିକତାରେ ପ୍ରେମ ଓ ମୃତ୍ୟୁ ଘଟିତ ବିଗ୍ରହରେ କୌଣସି ଅସୁବିଧା, ଅଡୁଆ କି ଦ୍ୱନ୍ଦ୍ୱ ନାହିଁ । ସଂପର୍କ ମାତ୍ରେଇ ସ୍ରଷ୍ଟାର ଏକ ଅନ୍ତରଙ୍ଗ ସ୍ପର୍ଶ ଯହିଁ ତାହା ଆତ୍ମ-ପ୍ରତାରଣାର ଭାବ-ଦୁଷ୍ଟ ହୋଇ ନ ଥାଏ । ମୃତ୍ୟୁ ସତ୍ତାର ଆଉ ଏକ ଆନନ୍ଦଘନ ରୂପାନ୍ତର ଯହିଁ ତାର ଅଜଣାର ଭୀତିଗ୍ରସ୍ତ ହୋଇ ନ ଥାଏ । ଉଭୟେ ବ୍ୟକ୍ତିକୁ ତାର 'ମୁଁ'ର କ୍ଷୁଦ୍ରତା, ଅବରୋଧ ଓ ଖର୍ବତା ଭିତରୁ ବିଶାଳ ସୃଷ୍ଟି ପ୍ରାଙ୍ଗଣକୁ ବାହାର କରି ଆଣନ୍ତି । ଅତଏବ ସେମାନଙ୍କ ପାଇଁ ଆଧ୍ୟାତ୍ମିକତାର କୁଣ୍ଠା ନାହିଁ କି ଭୀତି ନାହିଁ । ପ୍ରତିଟି ମୁହୂର୍ତ୍ତ ସେମାନଙ୍କ ପାଇଁ ହୃଦୟର ଏକ ଏକ ଶ୍ରଦ୍ଧାନୁରାଗର ନିମନ୍ତ୍ରଣ ଓ ସ୍ୱୀକୃତି ପତ୍ର ।

ଧର୍ମ କଠୋର ପ୍ରସ୍ତର ଖଣ୍ଡ, ଦଣ୍ଡ ଦିଏ । ପାପୀମାନଙ୍କୁ ବର୍ଷାରେ ଶାସ୍ତିର ଗାତ ଖୋଳି ପୋତିଦିଏ । ଭର୍ତ୍ସନାର ପ୍ରସ୍ତର ଫୋପାଡ଼ି ହତ୍ୟା କରେ । ଆଧ୍ୟାତ୍ମିକତା କିନ୍ତୁ କଷଟିପଥର । ସେ କେବଳ ଖାଦ ଦେଖାଇଦିଏ । ଖାଣ୍ଟି ହେବାକୁ ପ୍ରବର୍ତ୍ତାଇଦିଏ । ଆଧ୍ୟାତ୍ମିକତାର ପରମ ଗ୍ରହଣଶୀଳତାରେ ସବୁ ଧର୍ମର ଆଦ୍ୟ ଓଁକାର । ଆଧ୍ୟାତ୍ମିକତା ସବୁ ଧର୍ମର ମୂଳ ସୃଷ୍ଟି ପ୍ରେରଣା । ଆଉ ଅନ୍ୟକୁ ବିଧର୍ମୀ ବୋଲି କ୍ରୂଶରେ ଚଢ଼ାଇଦେବା ସବୁ ଧର୍ମର ଶେଷ ବ୍ୟଭିଚାର ।

"Each level of our being has its heavens and hells."* "ଅନ୍ଧତମଃ ପ୍ରବିଶ୍ୟନ୍ତି ଅବିଦ୍ୟା ଯ ମୁ ପାସତେ ।" ଏ ଅନ୍ଧାର ରାଜ୍ୟକୁ ପ୍ରବେଶ ଚେତନାର ଆଲୋକ-ଉପଲବ୍ଧି ପଥରେ ଅନିବାର୍ଯ୍ୟ । ଅନ୍ଧାରିଆ ଅବ-ଚେତନକୁ ଜାଣିବା, ଗୁହାଗୁଡ଼ିକୁ ଭେଟିବା, ଆଲୁଅଟିଏ ଜଳାଇବା, ତାହା ହିଁ ସେ ଯାତ୍ରାର ଉଦ୍ଦେଶ୍ୟ । ନରକ-ଦର୍ଶନ ବିନା ସ୍ୱର୍ଗରେ ପହଞ୍ଚି ହୁଏନାହିଁ, ଧର୍ମ ଯୁଧିଷ୍ଠିରଙ୍କୁ ବି ।

* Adventure of consciousness. (Satprem)

ମାତ୍ର ନରକର ଦ୍ୱାରଦେଶରୁ ଧର୍ମ ଏକୁଟିଆ ଛୁଡ଼ିଦେଇ, ତିରସ୍କାର କରି ଫେରିଆସେ । ଆଉ ଆଧ୍ୟାତ୍ମିକତା ନରକର ଘୋର ଯଂତ୍ରଣା ଭୋଗ ଭିତରେ ବି ଅମୃତଲୋକର ଆଶ୍ୱାସନା ଶୁଣାଉଥାଏ । ଧର୍ମ ଘୃଣିତ ସଂସାରିକରେ ପାପର ପାହାଚ ପାଖେ ପରିତ୍ୟାଗ କରେ । ଆଧ୍ୟାତ୍ମିକତା ନରକକୁ ସ୍ୱର୍ଗର ପ୍ରସ୍ତୁତ ପଥରେ ରୂପାନ୍ତରିତ କରେ । ତାର ଅନ୍ତରର ଦେବତା ଅଗ୍ନିକୁଣ୍ଡ ଭିତରେ ବି ସାଥୀରେ ରହି ହାତଧରି ଉଠାଇ ଆଣିବାକୁ ଚେଷ୍ଟା କରୁଥାନ୍ତି । ତାଙ୍କ "ମାଭୈଃ" ବାଣୀରେ ଅନ୍ଧାର ଅଛି, ପାପ ନାହିଁ; ନରକ ଅଛି, ଶାସ୍ତି ନାହିଁ, ପୀଡ଼ା ଅଛି, ଭର୍ତ୍ସନା ନାହିଁ । ବାସନ୍ଦ ନାହିଁ କି ବର୍ଜନ ନାହିଁ । ଅପୂର୍ଣ୍ଣତାର ଖେଦ ସହ ପୂର୍ଣ୍ଣତାର ପ୍ରସ୍ୱାଦ ଆଧ୍ୟାତ୍ମିକତାର ହିଁ ଶକ୍ତି । ଶ୍ରୀ ରାମକୃଷ୍ଣ ଶ୍ରୀ ଚୈତନ୍ୟଙ୍କ ଧର୍ମମତ ନୁହେଁ, ଆଧ୍ୟାତ୍ମିକ ସାହଚର୍ଯ୍ୟ ହିଁ କେତେ ପାଷାଣ୍ଡ ଚରିତ୍ରକୁ ପରିବର୍ତ୍ତିତ ଓ ଶ୍ରେୟସ୍ପର୍ଶିତ କରିଥିଲା ।

ବାଉଲ କବିର ସେଇ ଶ୍ରେଷ୍ଠ ଗୀତଟି—"ହୃଦୟ-କମଲ ଚଲିତେଛେ ଫୁଟି କତଯୁଗଧରି, ତାତେ ତୁମି ଓ ବାଁଧା, ଆମି ଓ ବାଁଧା ଉପାୟ କି କରି" ? ସେ 'ତୁମି' କିଏ, ତାର ପରିଚୟ ପାଇଁ ଧର୍ମ ଯୁଗ ଯୁଗ ମୁଣ୍ଡ ପିଟୁଥାଉ, ମନ୍ଦିର ମସ୍‌ଜିଦ୍ ଗଢ଼ା ହେଉଥାନ୍ତୁ ଭାଙ୍ଗୁଥାନ୍ତୁ, ଶତାବ୍ଦୀ ଶତାବ୍ଦୀ ଧରି କ୍ରୁସେଡ୍, ଜେହାଦ୍‌ର ଶୋଭାଯାତ୍ରା ଚାଲିଥାଉ ଆଧ୍ୟାତ୍ମିକତା ଭ୍ରୂକ୍ଷେପ କରେନାହିଁ । ହୃଦୟ କମଳରେ ବନ୍ଧା ସେଇ ପ୍ରାଣ-ପୁରୁଷଟି ଫୁଲମାଳ ପିନ୍ଧି ଧୂପଦୀପ ଆଲୁଅରେ ଭୋଗ ଖାଉଥାଉ କି ରଥଯାତ୍ରା ବୁଲୁ କି ଉପାସନା ଗୃହରେ ସ୍ତବ ପ୍ରାର୍ଥନା ଶୁଣୁଥାଉ ତାର ଆପତ୍ତି ନାହିଁ । ମାତ୍ର ତାର ସେ ଦେବତାକୁ ଧର୍ମ ନିଜ ସିଂହାସନରେ ବସାଇ କବାଟ କିଳଣି ପକାଇ ତାଠାରୁ ଅଲଗା କରିଦେବା ସେ ମାନିନେବ ନାହିଁ । ବରଂ ନିଶବାଲରେ ତାଙ୍କୁ କାନ୍ଦଣାଗୀତ ଶୁଣାଇବ, ଖରଡ଼ା ଶାଗପତ୍ରରେ ତାଙ୍କ ମୁହଁ ଦେଖିବ ।

ଧର୍ମରେ ବଡ଼ କଥା ଦେବତା, ତାଙ୍କ ମହାନତା । ଆଧ୍ୟାତ୍ମିକତାରେ ଏଇ ମହାନ ଦେବତା ପାଖେ ମଣିଷର କ୍ଷୁଦ୍ରତା ନେଇ କିଛି ସଂକୋଚ୍ ନାହିଁ । "କ୍ଷୁଦ୍ର ଏ ଆମର ମାଝେ ଅନନ୍ତ ଆସନ" ତଥାପି ତାଙ୍କପାଇଁ ସଜାଡ଼ି ରଖିହୁଏ । ମଣିଷକୁ ଛାଡ଼ି ମଣିଷର ଦେବତା କୁଆଡ଼େ ଯାଇପାରନ୍ତି ନାହିଁ । ହୃଦୟକମଳଟି ଥିବା ପର୍ଯ୍ୟନ୍ତ, ସେଠି ପାଖୁଡ଼ା ହୋଇ ଜୀବ ଓ ପରମ ଏକାଠି ଫୁଟୁଥିବା ପର୍ଯ୍ୟନ୍ତ ଭାବର ଗଣ୍ଠିରେ ଭକ୍ତ ଭଗବାନ ଛନ୍ଦାଛନ୍ଦି ହୋଇଥିବା ପର୍ଯ୍ୟନ୍ତ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର କୌଣସି କୁଣ୍ଠିତ ସମ୍ବାଦ ସେଠି ପହଞ୍ଚି ପାରିବ ନାହିଁ । ●

# ନାଦ ଓ ଆର୍ତ୍ତନାଦ

ନା ପୃଥିବୀର ଭାଷା ବୁଝେ,
ନା କହିପାରେ ଆକାଶର ଭାଷା !
ଆକାଶ ଓ ପୃଥିବୀର ଅହରହ କଥାବାର୍ତ୍ତା ପାଖେ
ଅବାକ୍ ବିମୂଢ଼ ଏଇ ଜୀବନ;
ଆପଣାର ଅବ୍ୟକ୍ତ ସ୍ୱଗଳାପ ପାଖେ
ସେ ନିଜେ ମଧ୍ୟ ଏକ ବିସ୍ମୟ !

ଆକାଶ ଓ ପୃଥିବୀର ଅହୋରାତ୍ର ଭାଷାଳାପରେ ଧ୍ୱନିମୟ ଯେ ସୃଷ୍ଟିର ପ୍ରାଣସ୍ପନ୍ଦନ, ଜୀବନ ତାକୁ ପ୍ରତ୍ୟୁତ୍ତର କରିବାକୁ ଯାଇ ଭାଷା ହରାଏ । ସେ ସଙ୍ଗୀତଟିଏ ଶୁଣାଇବାକୁ ଚାହେ, ମାତ୍ର ଆର୍ତ୍ତନାଦ୍‌ମୁଡ଼ାଏ ହିଁ ଉଚ୍ଚାରିଥାଏ ।

. ଭିତରେ ଯେଉଁ ଛନ୍ଦ ସ୍ଫୂର୍ତ୍ତିରେ, ଯେଉଁ ଅନୁଭବ ସଞ୍ଚାରେ, ଯେଉଁ ଝଙ୍କାର ଗୁଞ୍ଜରେ, ଜୀବନ ତାକୁ ପ୍ରାଣପଣେ ଉଚ୍ଚାରିବାକୁ ଚାହେଁ, ଧ୍ୱନିମୟ କରିଦେବାକୁ ଚାହେ । ବେଳେ ବେଳେ ପଥର ଫାଙ୍କରୁ ଜଳ ବୁଦ୍‌ବୁଦ୍ ପରି ଉଚ୍ଛ୍ୱାସମାନେ ସ୍ୱତଃ ଉତ୍‌ଥଳି ଆସନ୍ତି, ହାଲୁକା ଢେଉ ହୋଇ ମାଡ଼ି ଆସନ୍ତି । ସେମାନେ ସଙ୍ଗୀତ ନା ଆର୍ତ୍ତନାଦ ଭାବିବା, ଚିହ୍ନିବା, ଜାଣିବା ପୂର୍ବରୁ ସବୁ ପବନରେ ସଞ୍ଚରି ଯାଇଥାନ୍ତି । ଛାତି ଫାଟି ଯିବାର ବେଦନାକୁ ଆଖି ବୁଝିବା ପୂର୍ବରୁ ପବନ ବୁଝିଯାଇଥାଏ । ଶବ୍ଦ ବୁଝିଯାଇଥାଏ ।

ସଙ୍ଗୀତମାନଙ୍କୁ ବିକୃତ କରି ଉଚ୍ଚାରିବା ଆର୍ତ୍ତନାଦ ? ଆର୍ତ୍ତନାଦମାନଙ୍କୁ ସୁନ୍ଦର କରି ଗାଇବା ସଙ୍ଗୀତ ? ବିଳାପରୁ ସ୍ୱଗଳାପ······ବ୍ୟବଧାନ କେତେ ଦୂରର ? ଆର୍ତ୍ତନାଦର ସଙ୍ଗୀତ—ତଫାତ୍ କେତେ ସ୍ତରର ?

ଆର୍ତ୍ତନାଦ ବେଦନାସ୍ପୃତ । ଛଟପଟ ହୃଦୟଙ୍କ ବିଳାପ । ଆଉ ସଙ୍ଗୀତଟି ? ସେ ବେଦନାର ମର୍ମସ୍ଥଳକୁ ନିଃସରି ଯିବାର ବିମୁଗ୍ଧ ଅନୁଭବ ? ଆକୁଳ ମୁହୂର୍ତ୍ତମାନଙ୍କୁ ବିହ୍ୱଳ ତାନରେ ଜୋଡ଼ି ଦେଉଥିବା ତୃପ୍ତ ଲୟଛନ୍ଦ ? ଶୋକର ଉଚ୍ଛ୍ୱାସମାନଙ୍କୁ ବିଦଗ୍ଧ ଶ୍ଳୋକରେ ସଜାଡ଼ି ଦେଉଥିବା ଉଚ୍ଛଳିତ

ଉଲ୍ଲାସ ? ସଙ୍ଗୀତ କଣ ବମଥିତ କାରୁଣ୍ୟକୁ ବଗଳିତ କରୁଣାରେ ବୁହାଇ ଦେଉଥିବା ଉତ୍ତରଳ ଆବେଶ ?

ଆର୍ତ୍ତନାଦ ହଠାତ୍ ଉଚ୍ଚାରିତ ଓ ସ୍ତବ୍ଧ । ସଙ୍ଗୀତର ଅନୁରଣନ କାଳାବଧି । ଭିତରେ ବାହାରେ ହୃଦୟରେ ଆକାଶରେ ବହୁ ଦ୍ରୁତ, ବିଳମ୍ବିତ ଲୟ ଝଙ୍କାରର ସ୍ପଷ୍ଟ ଅସ୍ପଷ୍ଟ ତାନ ।

ସେ ତାନଟି ଆନନ୍ଦର । ସଙ୍ଗୀତର ଭାଷା ସୁଖର ହେଉ ବା ଦୁଃଖର ହେଉ, ଲୁହର ହେଉ ବା ପୀଡ଼ାର ହେଉ, ତୀବ୍ର ପ୍ରକାଶ ବ୍ୟାକୁଳତାରେ ତାହା ପ୍ରଗାଢ଼ ହୋଇଗଲେ ହିଁ ଫଳପ୍ରଦ ଲୟଯୁକ୍ତ ହୋଇଯାଏ । ଆର୍ତ୍ତନାଦର ବ୍ୟଥାମାନେ ନାଦମୟ ମଧୁରତାରେ ଉଲ୍ଲସି ଉଠନ୍ତି ।

ସ୍ୱରମାନଙ୍କ ସମାହାରରେ ସଙ୍ଗୀତଟିଏ ସୃଷ୍ଟି ହୁଏ । ସେଇ ସ୍ୱରମାନେ ମଧ୍ୟ ଆର୍ତ୍ତନାଦରୂପେ ଉଚ୍ଚାରିତ ହୋଇଥାନ୍ତି । ସଙ୍ଗୀତର ସେ ମଧୁରତାକୁ ଓ ଆର୍ତ୍ତନାଦର କର୍କଶତାକୁ ପ୍ରକୃତରେ ସ୍ୱରମାନେ ସୃଷ୍ଟି କରନ୍ତି ନାହିଁ । ସ୍ୱରସବୁ ଗୋଟିଏ ଛନ୍ଦ ପାଇଗଲେ, ଲୟଯୁକ୍ତ ହୋଇଗଲେ ଯେ ମଧୁରତାର ରସରେ ଆର୍ଦ୍ର ହୁଅନ୍ତି, ତାହାହିଁ ସଙ୍ଗୀତ ହୋଇ ପ୍ରସରିଯାଏ । ସେଇ ଛନ୍ଦଟି, ଲୟଟି, ତାନଟି ମିଳିନଥିବା ପର୍ଯ୍ୟନ୍ତ ସ୍ୱରମାନଙ୍କର ସବୁ ସମାରୋହ କୋଳାହଳର ବିକୃତ ଆର୍ତ୍ତନାଦ ।

ଏକ ସ୍ୱରରେ ସଙ୍ଗୀତ ହୁଏନାହିଁ । ସପ୍ତସ୍ୱର ମଧ୍ୟ ଏକତ୍ର ସଙ୍ଗୀତ ସୃଷ୍ଟି କରନ୍ତି ନାହିଁ । ସପ୍ତସ୍ୱର ଏକ ଏକ ହୋଇ ଯଥାଯଥ ଗାନ ହୋଇ ପାରିଲେହିଁ, ଆଉ ସେ ଅବକାଶରେ ଏକକ ଛନ୍ଦ, ଏକକ ତାନଟିରେ ଲୟଧୃତ ହୋଇ ପାରିଲେ ହିଁ ସେମାନଙ୍କର ପାରସ୍ପରିକ ସଂଗତ ସହିତ ସନ୍ନିକର୍ଷରେ ସଙ୍ଗୀତଟି ସୃଷ୍ଟି ହୋଇପାରେ ।

ସା - ରୁ ନି - - ପର୍ଯ୍ୟନ୍ତ । ନି ରେ ଶେଷ ନୁହେଁ, ସା-ରେ ସ୍ଥିର ବି ନୁହେଁ । ସା-ରେ ଗାମାପାଧାନିର ଆରୋହ ଅବରୋହରେ ଅହରହ ଯାତାୟତ କରୁଥିବା ଲୟଧୃତ ଆବେଗର ତାନ କଂପିତ ମୂର୍ଚ୍ଛନାଟିଏ... ।

ସେଇ ତାନଟି, ତାର ଗତିଛନ୍ଦର ଅନ୍ବେଷଣରେ ଚିରନ୍ତନ ଜୀବନ । ଆକାଶ ପୃଥିବୀର କଥାବାର୍ତ୍ତାକୁ ଅନୁଭବର ସୂକ୍ଷ୍ମ ତନ୍ତ୍ରୀରେ ଧରି ରଖିବାକୁ

ତାର ଯେ ସୁରସାଧନା ତାହା ଆର୍ତ୍ତନାଦ ରୂପେ ଉଚ୍ଚାରିତ ହୋଇପାରେ, ତଥାପି ତାହା ନାଦମୟତାର ସାଧନା ।

ସଙ୍ଗୀତ ଆତ୍ମାର ଗାନ । ଅନ୍ତରାନୁଭବର ଉଲ୍ଲାସ । ଖଣ୍ଡିତ ଜୀବନର ମୁହୂର୍ତ୍ତ-ବିଭକ୍ତ ଦୁଃଖ ବିଳାପମୟ ଆର୍ତ୍ତନାଦମାନଙ୍କର ଅନ୍ୱେଷିତ ଆନନ୍ଦଧାମ !

ଏ ପୃଥିବୀର ଜୀବନ କେବଳ ଆର୍ତ୍ତନାଦ । ଭାବ ଅନୁଭବର ସ୍ୱରମାନେ ସେଠି ବିଳାପ କରି ଗୁଲିଥାନ୍ତି । ମାତ୍ର ଛନ୍ଦ ପାଆନ୍ତି ନାହିଁ ।

ଏ ସୃଷ୍ଟିରେ ସବୁ ସ୍ୱର କୋଳାହଳ । ସବୁ କଥା ଆର୍ତ୍ତନାଦ । ସବୁ କବିତା କ୍ରନ୍ଦନ । ସେମାନେ କିନ୍ତୁ ସେଇ ଛନ୍ଦ ଲୟ ତାନର ଅପେକ୍ଷାରେ ଯାହା ଥରେ ମିଳିଗଲେ ସଙ୍ଗୀତର ଧ୍ରୁବପଦ ସବୁଦିନ ପାଇଁ ଉଚ୍ଚାରିତ ହୋଇଯିବ ।

ସଙ୍ଗୀତର ଅପେକ୍ଷା, ସଙ୍ଗୀତର ବ୍ୟାକୁଳତା, ଗାନ ହେବାର ଆକୁଳତାଟି ହିଁ ଆର୍ତ୍ତନାଦ । ଅନ୍ତରାତ୍ମାର ସେ ଆର୍ତ୍ତିଟି କେତେବେଳେ କପରି ଭାବରେ ହୃଦୟର ସରସ ପ୍ରବାହ ହୋଇ ଖେଳିଯାଏ, ସୁରକାରର ହାତର ଅଙ୍ଗୁଳି, ଓଠର ପବନରେ ତାହା ହୃଦୟରୁ ବାହାରି ଆକାଶ ପବନରେ ବିଚ୍ଛୁରିତ ହୋଇଯାଏ ତାର ରହସ୍ୟ ସୁର ଶିଳ୍ପୀକୁ ଅଜ୍ଞାତ । ଜଳଧାରାର ସବୁ କଳଧ୍ୱନି ଶଯ୍ୟାଧାରର ଗଭୀରତାରୁ ସଂଜାତ ହୋଇ କୂଳରେ ସଂଗ୍ରଥିତ ହୋଇଥାନ୍ତି । ସେ କଳଧ୍ୱନିର ଉଚ୍ଛ୍ୱାସଟି କେଉଁ କ୍ଷୁଭିତ ମୁହୂର୍ତ୍ତର ଆର୍ତ୍ତନାଦ, ତାର ସଂବାଦ କିନ୍ତୁ ତଟ-ଭୂମିର ଗାନରେ ନ ଥାଏ ।

ଆର୍ତ୍ତନାଦମାନେ ଘଟଣା-ସଂଜାତ । ଘଟଣାଟିଏରୁ ଘଟନ୍ତି ଆଉ ତା'ପରେ ଘଟଣାଟିଏ ବି ଘଟାନ୍ତି । କିନ୍ତୁ ଗୋଟାଏ ନ ଘଟିଥିବାର ଘଟିଗଲି, ଆଉ ଭିନ୍ନ କିଛି ଘଟିବାର ଆରମ୍ଭ ହୋଇଗଲା । ସା···କୁ ପା···ରେ, ପା · କୁ ନି···ରେ ବାନ୍ଧିବାରେ ଧାରାଟି ଚଢ଼ି ଚଢ଼ି ଉପରି ଯିବାର କ୍ରମଟି ବନ୍ଧା ହୋଇଗଲା ।

ଆର୍ତ୍ତନାଦମାନେ ଯେତେବେଳେ ପ୍ରତିଶ୍ରୁତିଟିଏ ପାଇଯାନ୍ତି, ସଙ୍ଗୀତର ପୂର୍ବାଳାପ ହୋଇଯାନ୍ତି, ପ୍ରତିଶ୍ରୁତିମାନେ ପ୍ରକାଶର ସୁଯୋଗ ପାଇଲେହିଁ ସଙ୍ଗୀତର ମାଦକତା ସୃଷ୍ଟି କରନ୍ତି । ସେ ପ୍ରତିଶ୍ରୁତିଟି ହେଉଛି, ସ୍ୱରମାନେ

ଅଭିବ୍ୟକ୍ତ ହେବାର ସାମର୍ଥ୍ୟକୁ ଠିକ୍ ଠିକ୍ ସ୍ଥାନରେ ଠିକ୍ ଠିକ୍ ସମୟରେ ନିଭିକରିବା । ମାତ୍ର ଆର୍ତ୍ତନାଦ ବେଠିକଣା, ଯେଉଁଠି ଯେତେବେଳେ ଯାହା ହେବାର କଥା, ନ ହୋଇ ପାରିବାଠା ହିଁ ଯେଉଁ ଧ୍ୱନିମାନଙ୍କୁ ଅସଂଗତ ଉଚ୍ଚାରଣ କରେ, ସେମାନେ ଠିକ୍ ଠିକ୍ ସ୍ଥାନ ଖୋଜି ଆସନ୍ତିନାହିଁ, ଖୋଜି-ପାଆନ୍ତି ନାହିଁ । ସେମାନେ ଉଦ୍‌ଗୀତ ନୁହନ୍ତି, ଉଦ୍‌ଗାରିତ; ଉଲ୍ଲାସ ନୁହନ୍ତି, ଉଚ୍ଛ୍ୱସିତ ।

ସଙ୍ଗୀତର ରାଜ୍ୟ ସୁଦୂର । ଆର୍ତ୍ତନାଦର ଧୂଳି ଧୂସରିତ, କଂକରିତ କଣ୍ଟକିତ ଦୁର୍ଗମ ଅରଣ୍ୟରେ ତା ପାଇଁ ବାଟ ଖୋଜିବାକୁ ହୁଏ । ଆର୍ତ୍ତନାଦ-ମାନଙ୍କୁ ଫାଙ୍କି ହେବନାହିଁ, ଅସ୍ୱୀକାର କରିହେବନାହିଁ, ଆଡ଼େଇଦେଇ ହେବ-ନାହିଁ । ସେମାନେ ଅନିବାର୍ଯ୍ୟ । ନଦୀଟି କୂଳରେ ଧକ୍‌କା ଖାଇବାରେ, ପଥର କାନ୍ଥିରେ ପିଟି ହେବାରେ ଜଳବନ୍ଧର ଅନ୍ତଃକରଣରୁ ନିର୍ଗତ ଆର୍ତ୍ତନାଦଟି ଜଳଧାରା ଶୁଣିବ ହିଁ ଶୁଣିବ । ପରେ ସେ ତାକୁ ହୁଏତ ପୁଲକର କଳକଳ ଛଳଛଳ କୋମଳ ଗାନ୍ଧାର କି ଉଚ୍ଚାଟିତ ଜଳଦ୍‌ମନ୍ଦ୍ର ମହ୍ଲାରର ତାନ ବାନ୍ଧିଦେବ ତାହା ତାର ଐକ୍ୟତାନିକ ପ୍ରବାହର କାରୁକାର୍ଯ୍ୟର ଐଶ୍ୱର୍ଯ୍ୟ ।

ସଙ୍ଗୀତ ପାଇଁ ପାଗଳ ହୋଇଯିବାକୁ ହୁଏ, ଆଉ ଆର୍ତ୍ତନାଦମାନେ ହିଁ ପାଗଳମି ହୋଇ ବାହାରି ଆସନ୍ତି । କିଛି ବୁଝି ନ ପାରିବା; କିଛି କରି ନପାରିବା, ସଜାଡ଼ି ନ ପାରିବା କି ସମ୍ଭାଳି ନ ପାରିବାର ପରାସ୍ତ କାରୁଣ୍ୟଟି ଆର୍ତ୍ତନାଦ ହୋଇ, ହୃଦପଞ୍ଜର ଫଟାଇ, ଉଚ୍ଛ୍ୱାସଟିଏ ହୋଇ ଯେ ମର୍ମସ୍ଥଳରୁ ଉତ୍ସାରିତ ହୋଇଯାଏ, ସେଥିରେ ସଙ୍ଗୀତ ହେବାର ବ୍ୟାକୁଳତାଟି ଭରି ରହିଥାଏ, ସଙ୍ଗୀତର ସଜଡ଼ା ସୌମ୍ୟ ଲଳିତ ରୂପଟି ନଥାଏ । କାରୁଣ୍ୟ, ଉଚ୍ଛ୍ୱାସ, ଆବେଗ, ସଂବେଦନ, ସଞ୍ଚରଣର ଗୋଟିଏ ପ୍ରଚଣ୍ଡ ଶକ୍ତିଶାଳୀ ପ୍ରାଣବନ୍ତ (soulful) ଧ୍ୱନି, ଆକୂତି; ଯେମିତି ସେ ଆତ୍ମାର ବିସ୍‌ଫୋରଣ ! ସେ ବିସ୍‌ଫୋରଣ ଧରିତ୍ରୀର ଗୁଡ଼ି ବିଦୀର୍ଣ୍ଣ କରିପାରେ, ଆକାଶରେ ବଜ୍ରରଡ଼ିର ସ୍ତବ୍‌ଧତା ସୃଷ୍ଟି କରିପାରେ । ଭାଙ୍ଗିପଡ଼ିବା, ଧସି ପଡ଼ିବା, ତରଳିଯିବା, ମିଳାଇଯିବା, ବିଚ୍ଛୁରିତ ହୋଇଯିବାର ଆତୁରତା ଯେମିତି କି ଏକ ସଘନ ସାନ୍ଦ୍ର ସ୍ଥିର ଶାନ୍ତ ସମାହିତତାର ସଂପୂର୍ଣ୍ଣ ବିକଳ ବିଭଙ୍ଗ ବିରୂପତା କଣ ହୋଇପାରେ—ପ୍ରକାଶ କରିଦିଏ ।

ସ୍ୱରମାନେ କେଉଁ ପର୍ଯ୍ୟନ୍ତ ଆର୍ତ୍ତନାଦ, କେତେବେଳେ ବା ସଙ୍ଗୀତ ହେବାର ସ୍ତରକୁ ଉଠିଯାନ୍ତି, କାହାରିକୁ ଜଣାନାହିଁ । ଶିଶୁର ପ୍ରଥମ ଆତ୍ମ-ପ୍ରକାଶର ଘୋଷଣାଟିରେ ପୃଥିବୀର ଓଠରେ ଜୀବନର ଉଦୟଗାନ ଉଚ୍ଚାରିତ ହୋଇଯାଏ, ସେଥିରେ କଣ ଜୀବନର ଆମରଣ ବଞ୍ଚିବାର ରୂପସନ୍ଧାନ, ସଙ୍ଗୀତଟିଏ ଯଥାର୍ଥ ରୂପରେ ଗାଇ ପାରିବାର, ହୋଇ ଉଠିବାର ଆକୁତି, ନପାରିବାର ବ୍ୟଥା ଓ ବ୍ୟର୍ଥତାର ଗୁଞ୍ଜରଣମାନ ମିଶି ରହିଥାନ୍ତି ? ସେଥିପାଇଁ ତାହା 'କାନ୍ଦ' ବୋଲି ଶୁଭେ ? ଖୁସି ଓ ଆନନ୍ଦର ସେ ପ୍ରଥମ କାନ୍ଦ ଠିକ୍ ତାର ପରମୁହୂର୍ତ୍ତରୁ କେବଳ ଖୁସି ଆନନ୍ଦକୁ ଖୋଜି ହେଉଥିବା ଆତ୍ମାର ଆର୍ତ୍ତନାଦ ହୋଇ ବାଜି ଚାଲିଥାନ୍ତି ?

ମୂର୍ଚ୍ଛନାଗୁଡ଼ିକୁ କପରି ସଜାଡ଼ି ଜାଣିଲେ ସଙ୍ଗୀତଟିଏ ବାଜିଉଠେ, ସେଇ ଝଙ୍କାରକୁ ସାରା ଜୀବନ ଖୋଜିବାକୁ ହୁଏ ? ଗୋଟିଏ ତାରକୁ ଆୟତ୍ତରେ ଆଣିବାବେଳକୁ ଆଉ ଗୋଟିଏ ନୂଆ ତାର ଦେଖାଦିଏ । ଗୋଟିଏ ସୁର ସାଧିବସିବା ବେଳକୁ ଆଉ ଆଉ ଚଢ଼ା ସୁରମାନେ ଉଙ୍କି ମାରିଯାନ୍ତି । ଅପହଞ୍ଚ ସେ ସ୍ୱରର ଲୟବିନ୍ଦୁ । ପ୍ରତି ସୁର ଗୋଟିଏ ଗୋଟିଏ ଦୁର୍ଲଂଘ୍ୟ ଆହ୍ୱାନ, ଦୁଃସାଧ ଶୀର୍ଷବିନ୍ଦୁ । ଆଉ ଶେଷ ରୂପଟି ବ୍ୟର୍ଥତାରେ ଭାଙ୍ଗିପଡ଼ିବାର ସ୍ତବ୍ଧତା । ନାରଦର ବୀଣା ତାରରେ ସବୁ ରାଗରାଗିଣୀ ବିକଳାଙ୍ଗ, ସବୁ ଛନ୍ଦ ବେତାଳ ।

ଜୀବନର କାଳାନ୍ତର ବ୍ୟାପୀ ନାରଦୀୟ ସାଧନାସତ୍ତ୍ୱେ କଣ ସଙ୍ଗୀତର ସେ ଅଶ୍ରୁତ ନାଦଟି ନିନାଦିତ ହୋଇ ଉଠିବା ଭଳି ଉମ୍ବରୁଟିଏ ସୃଷ୍ଟି ହୋଇ-ନାହିଁ ? ଅବଶିଷ୍ଟ ଅନ୍ତରୀକ୍ଷବ୍ୟାପୀ ସେଇ ବ୍ୟର୍ଥତାର କ୍ରନ୍ଦନ ଆର୍ତ୍ତନାଦ ହୋଇ ଗୁଞ୍ଜରିତ ?

ଜୀବନ କେବଳ ଆର୍ତ୍ତନାଦ ଯଦି, ସଙ୍ଗୀତର ଲୟ, ମୂର୍ଚ୍ଛନାର ଛନ୍ଦ ସେ ଖୋଜିଶିଖିଲା କପରି ? ଆଉ ଜୀବନ ସଙ୍ଗୀତଟିଏ ଯଦି ଆର୍ତ୍ତନାଦର ବିକଳ ବିଭଙ୍ଗତାରେ ସେ ବାରବାର ବେସୁରା ହୋଇଯାଏ କାହିଁକି ?

ଆର୍ତ୍ତନାଦ ଓ ସଙ୍ଗୀତ—ସମୁଦାୟ ଜୀବନ କଣ ଏଇ ଦୁଇ ପ୍ରାନ୍ତକୁ ସଂଯୋଗ କରିବାରେ ଲାଗି ପଡ଼ିଥିବା ଅଦୃଶ୍ୟ ବୀଣାତାର ? ସଙ୍ଗୀତର ମଧୁରତାକୁ ଅଜସ୍ର ତାରରେ ଧରି ରଖିବାର ଅତୃପ୍ତ ଅଶାନ୍ତ ସ୍ୱରଝଙ୍କାର ? ଶବ୍ଦକୁ

ନାଦରେ ମିଳାଇଦେବାକୁ ଅହରହ ଉଦ୍‌ବେଳ ସ୍ୱର-ସାଗରର ବାରବାର ଶବ୍ଦଖଣ୍ଡରେ ଭାଙ୍ଗି ପଡୁଥିବା ଆର୍ତ୍ତ ଆକୁଳ ତରଙ୍ଗ ତାଳ ?

ଜୀବନ କେଉଁ ସଙ୍ଗୀତ ଗାନ କରିପାରିବ ? ତାର ପ୍ରତିଟି ଅଣୁକୋଷରେ ଯେ ତୀବ୍ର କମ୍ପନ, ତାର ପ୍ରତିଟି ରକ୍ତକଣାରେ ଯେ ଆବେଗ ସ୍ପନ୍ଦନ, କେଉଁ ସ୍ୱରମୂର୍ଚ୍ଛନା ତାକୁ ଛୁଇଁ ପାରିବ ? ଅପରିମିତ ଆବେଗକୁ ବାନ୍ଧିବାର ମାତ୍ର ସାତଟି ଖିଅ ଯେ ତା ପାଖରେ । ବ୍ୟକ୍ତଠାରୁ ଅବ୍ୟକ୍ତ ଅନେକ ବେଶି । ଯାହା ବ୍ୟକ୍ତ ତାହା ସଙ୍ଗୀତ ନା ଅବ୍ୟକ୍ତହିଁ ପ୍ରାଣମୟ ନାଦ ସ୍ପନ୍ଦନର ନିରବଧି ଅନୁରଣନ ! ଯାହା ବ୍ୟକ୍ତ ତାହା କଣ ନିଜକୁ ସମ୍ଭାଳି ନପାରିବାର ଆର୍ତ୍ତନାଦ ? ଉଚ୍ଚାରିତ ଧ୍ୱନିମାନଙ୍କ ଭିତରେ ଯେ ମଧ୍ୟବର୍ତ୍ତୀ ନୀରବତା, ସେଇମାନେହିଁ ସବୁ ଉଚ୍ଛ୍ୱସିତ ଆବେଗକୁ ସମ୍ଭାଳି, ସଂଗ୍ରହ ନେଉଥିବାର ସମାହିତ ସ୍ୱରମୂର୍ଚ୍ଛନା ?

ସମୁଦ୍ରରେ ଉଚ୍ଛଳିତ, ଆକାଶରେ ଗୁଞ୍ଜରିତ ସୃଷ୍ଟିର ସଙ୍ଗୀତ ଢେଉର ତାଳରେ ଲୀଳାୟିତ, ପବନର ତାଳରେ ଦୋଳାୟିତ । ଅତଳ ସ୍ୱରର ଅଛନ୍ଦ ଲୟ ହୃଦୟର ସ୍ପନ୍ଦନ—ଛନ୍ଦରେ ପ୍ରତିଧ୍ୱନିତ । ବକ୍ଷ ବିଦୀର୍ଣ୍ଣ, କଣ୍ଠ-ରୁଦ୍ଧ, ଉଚ୍ଛ୍ୱସିତ ଅନ୍ତରାତ୍ମାର ବ୍ୟାକୁଳ ଉଚ୍ଚାରଣ କେବଳ କାତର ଧ୍ୱନି କେତୋଟି ।...

ଧ୍ୱନିଟିଏ...। ଯନ୍ତ୍ରଣାର ହୋଇପାରେ । ତଥାପି ତାହା ସ୍ଫୁରିତ, ସ୍ୱରର ସ୍ପନ୍ଦନ ଯୁକ୍ତ । କେଉଁଠି ତାରଟିଏ ରହିଛି ତାର ସେ ସ୍ପନ୍ଦନକୁ ଛୁଇଁବ, ସ୍ଫୁରି ଉଠିବ ଓ ଧ୍ୱନିମୟ ହୋଇଯିବ । ତାହା କରୁଣ ବିଳାପ ହୋଇପାରେ । ତଥାପି ତାହା ମଧୁର ଆଳାପଟିଏ ହୋଇଉଠିବାର ସମ୍ଭାବନାରେ ଶିହରିତ ହୋଇଯିବ । ଯାହା ଆର୍ତ୍ତ ଧ୍ୱନି କରିପାରୁଛି ଆନନ୍ଦର ଗାନଟିଏ ବି ଶୁଣାଇପାରିବ । କୋମଳ, ପ୍ରୀତିମୟ, ସସ୍ନେହ ସ୍ପର୍ଶଟିଏ ବାଦ୍ୟ ଆତ୍ମାର ବାଣୀ ସହ ଅନ୍ତରାତ୍ମାର ବାଣୀଟିକୁ ସ୍ୱର ସଂଯୁକ୍ତ କରିଦେବ । ଆର୍ତ୍ତନାଦର କାରୁଣ୍ୟକୁ ସଙ୍ଗୀତର ନାଦ ବିନ୍ଦୁରେ ଲୟ-ସମାହିତ କରିଦେବ ।

ଯନ୍ତ୍ରଣାର ସ୍ୱର ଭିତରେ ଜୀବନ ବୋଧହୁଏ ଆନନ୍ଦର ମର୍ମଧ୍ୱନିକୁ ପ୍ରବେଶ କରେ । ଯନ୍ତ୍ରଣାର ଅନୁଭବ ଜୀବନକୁ ଜାଗରିତ, ସଚେତ କରେ ।

କେଉଁ ଅତଳ ଗହ୍ୱରତାରେ କଏ ଯେପରି ସେହି ଯନ୍ତ୍ରଣାର ପୀଡ଼ା-ପ୍ରଦାହି ସ୍ପର୍ଶରେ ଚମକାଉଠେ, କଂପିଉଠେ, ପ୍ରାଣ-ସ୍ପନ୍ଦିତ ହୋଇଉଠେ । ଆଖିପତାଟି ଥରିଉଠେ । ପକ୍ଷୀର ଡେଣାଟି ଶିହରିଉଠେ । ପତ୍ରଟି ହଲିଯାଏ । ଜୀବନ ଯେମିତି ବୁଝିଯାଏ ଯନ୍ତ୍ରଣା ହିଁ ତାର ନିଜ ସହ ବୁଝାମଣାର ଭାଷା-ରୂପ, ଅନ୍ତରାତ୍ମା ସହ ସଂଯୋଗ-ସ୍ୱର । ଯନ୍ତ୍ରଣାର ସେ ସ୍ୱରକୁ ଧରିପାରିଲେ, ବଜାଇପାରିଲେ ଆନନ୍ଦର ମଧୁର ତାନଟିକୁ ଛୁଇଁପାରିବ, ସଂଭାରିପାରିବ, ପ୍ରତିଧ୍ୱନି କରିପାରିବ । ଯେଉଁଠି ଯନ୍ତ୍ରଣାର କଣ୍ଟାଟି ବିନ୍ଧୁଛି, ସେଠି ଖୁସିର ଫୁଲ-କୋମଳ ସ୍ପର୍ଶଟି ପହଞ୍ଚିପାରିବ । ଆଶା ଓ ଆନନ୍ଦର ଆଲୋକ ରେଖାଟି ସେଇ ନିରାଶାର ଘନାନ୍ଧକାର ଗୁହା ଭିତରକୁ ବାଟ ପାଇଯିବ ।

ଏ ପୃଥିବୀକୁ ଅନ୍ଧାରର ପ୍ରାର୍ଥନା ଜଣା, ତାହା ଆଲୁଅ ଖୋଜାର ଆର୍ତ୍ତନାଦ । ମାତ୍ର ଆଲୋକର ପ୍ରାର୍ଥନା ଯେଉଁ ସଙ୍ଗୀତ, ତାର ସ୍ୱର ରହସ୍ୟ ପୃଥିବୀର ଏବେବି ଅଜ୍ଞାତ । ସେଇଥିପାଇଁ ତ ସୃଷ୍ଟି କାଳରୁ ପୃଥିବୀର ପବନରେ ପତ୍ରରେ, ଧୂଳିରେ, ଧାରାରେ, ପକ୍ଷୀର ଡେଣାରେ ଓ ଫୁଲ ପାଖୁଡ଼ାରେ ଏବଂ ସ୍ନାୟୁ-ସ୍ପନ୍ଦନରେ ସବୁ ଧ୍ୱନିମୟ ଉଚ୍ଛ୍ୱାସର ଉଚ୍ଚାରଣରେ ତାକୁ ଗାଇବାକୁ ଚେଷ୍ଟା କରୁଛି । ତାର ସୁର ସନ୍ଧାନ କରିଚାଲିଛି । ଗ୍ରହନକ୍ଷତ୍ରଙ୍କ ଗତି ରେଖାରେ, ଅକ୍ଷାଂଶପଥରେ, ନିଜ ଘୂର୍ଣ୍ଣନର ଶବ୍ଦରେ ଯେ ଛନ୍ଦ ସୃଷ୍ଟି, ସେ କଣ ସେଇ ଅଶ୍ରୁତ ସଙ୍ଗୀତର ସ୍ୱରଧ୍ୱନି ? ପ୍ରତିଟି ଜଡ଼-ଜୀବର ଅଣୁକୋଷରେ ସ୍ପନ୍ଦିତ ସେ ପ୍ରକାଶ—ଆବେଗର ଶୃଙ୍ଖଳା—କଣ ସେ ମହାସଙ୍ଗୀତର ଅନାହତ ନାଦଧ୍ୱନି ?

ବେଳେବେଳେ ମନେହୁଏ ଶେଷ ସଙ୍ଗୀତଟି, ଠିକଣା ସଙ୍ଗୀତଟି, ଯାହାକୁ ଥରେ ଗାଇପାରିଲେ ସ୍ୱରମାନେ ମୂର୍ଚ୍ଛିତ ହୋଇଯିବେ, ଛନ୍ଦମାନେ ପୁଲକି ଉଠିବେ, ତାନ ସଂଗୁରିଯିବେ ଓ ଲୟ ଧ୍ୟାନସ୍ଥ ହୋଇଯିବେ, ତାହା ଟିକ ଅପହଞ୍ଚ । ନିଃଶ୍ୱାସ ପ୍ରଶ୍ୱାସର ସମତାଳିକ ଛନ୍ଦଟି ହନେ ନା ହନେ ଭାଙ୍ଗିଯିବ । ପରିମିତ ବ୍ୟବଧାନରେ ସ୍ପନ୍ଦିତ ବକ୍ଷସ୍ଥଳ ସ୍ଥିର ନିଷ୍କମ୍ପ ହୋଇଯିବ । ନୀରବ ରହିଯିବେ ତାଳଯୁକ୍ତ ପଦଦ୍ୱୟ । ସ୍ତବ୍ଧ ରହିଯିବ ଅକ୍ଷାଂଶ କ୍ରମରେ ପୃଥିବୀର ଘୂର୍ଣ୍ଣନ । ମହାଶୂନ୍ୟର ନୀରବତାରେ ଶବ୍ଦହୀନ, ଛନ୍ଦହୀନ, ସ୍ୱରହୀନ ସଙ୍ଗୀତଟିଏ ହୁଏତ ସେତେବେଳେ ପୃଥିବୀର ସବୁ ଆର୍ତ୍ତନାଦକୁ ଆପଣା ଭିତରେ ସ୍ୱର୍ଗୀୟ ନାଦଟିଏ କରି ପରମ ଅନୁକମ୍ପାରେ ସମ୍ଭାଳିନେବ ।

ସଙ୍ଗୀତଟି କେଉଁ ସ୍ୱର୍ଗର ? ଆର୍ତ୍ତନାଦ ବା କେଉଁ ନରକର ? ସ୍ୱର୍ଗ ଓ ନରକର ସେ କେଉଁ ଅପହଞ୍ଚ ସ୍ତରରେ ସେମାନେ ପୃଥକ୍ଭୂତ ବଞ୍ଚିଛନ୍ତି ? କିମ୍ବା ଏଭଳି ସ୍ତର ଅଛି ଯେଉଁଠି ସେମାନେ ଏକତାନ, ଏକ ଧାମ ? ଯେଉଁଠି ଆର୍ତ୍ତନାଦ ଓ ସଙ୍ଗୀତ ଏକନାମ ?

ସ୍ୱର୍ଗର ସଙ୍ଗୀତ ଓ ନରକର ଆର୍ତ୍ତନାଦ ଯେଉଁଠାରେ ଭେଟାଭେଟି ହୁଅନ୍ତି ସେ କଣ ପୃଥିବୀର ଗୁନ୍ତ ? ସ୍ୱର୍ଗ-ସଙ୍ଗୀତକୁ ଗାନ କରିବାକୁ ଯାଇ ସେ ଆର୍ତ୍ତନାଦରେ ବିକୃତ-କଣ୍ଠ ହୋଇଯାଏ ? ଆଉ ନରକର ଆର୍ତ୍ତକ୍ରନ୍ଦନ ଭିତରେ ସ୍ୱର୍ଗୀୟ ସଙ୍ଗୀତଟିଏ ହୋଇଉଠିବାର ଆକୂତିରେ ଲୋଟିପଡ଼େ ?

ସ୍ୱର୍ଗର ଗୋଟିଏ ପାହାଚ ଚଢ଼ିବା ପାଇଁ ହୃଦୟକୁ କୋଟିଏ ନରକର ଯନ୍ତ୍ରଣା ଭୋଗିବାକୁ ପଡ଼େ । ସଙ୍ଗୀତର ଗୋଟିଏ ସୁର ସାଧିବାକୁ ଯାଇ ଆର୍ତ୍ତନାଦର କୋଟି କୋଟି ଛିନ୍ନ ତାର ହୋଇ ମିଳାଇ ଯିବାକୁ ହୁଏ ।

ସଙ୍ଗୀତ ଓ ଆର୍ତ୍ତନାଦ—ଗୋଟିଏ ତାରରେ ହିଁ ବାନ୍ଧିଥାନ୍ତି ପ୍ରେମ ।

ପ୍ରେମର ଅନୁଭବମାନେ ହିଁ ସଙ୍ଗୀତ ଓ ତାର ଉଚ୍ଚାରଣ ମାତ୍ରେ ହିଁ ଆର୍ତ୍ତନାଦ । ହୁଏତ ଗୀତରେ ଗାଇବାକୁ ଯାଇ ପ୍ରେମର ସବୁକଥା ଆର୍ତ୍ତନାଦରେ ଛିନ୍‌ଭିନ୍ ହୋଇଯାଏ ।

ସଙ୍ଗୀତ ଓ ଆର୍ତ୍ତନାଦ—ତାର ସୁରସାଧକ ଏ ମର୍ତ୍ତ୍ୟର ମଣିଷ । ବିଷାଦ ଓ ଆନନ୍ଦର ସ୍ୱର ଖୋଜା ତାର ଏଇ ଜୀବନ ।

ଅନ୍ତରାତ୍ମା ଏଠି ଚିରନ୍ତନ ଅର୍ଫ୍ୟୁସ୍ । ପ୍ରେମର ସଙ୍ଗୀତଟି କେବଳ ଗାଇଜାଣେ । ସେ ପ୍ରେମକୁ ମଣିଷ ଆକାଶର ଗୁନ୍ତରୁ ଶୁଣିବାକୁ କାନପାତେ, ଆଉ ଧରିତ୍ରୀର ଗୁନ୍ତରେ ବାନ୍ଧି ରଖିବାକୁ ତାର କଷେ । ପ୍ରେମର ସେ ଆକାଶୀ-ସଙ୍ଗୀତକୁ ସେ ଅବିକଳ ପୃଥିବୀରେ ଉତାରି ଦେବାକୁ ଜୀବନର ବୀଣାରେ ଅନୁଭବର ଖିଅ ସଜାଡ଼ି ଚାଲିଥାଏ ।

ମାତ୍ର ବାରମ୍ବାର ଏ ପୃଥିବୀରେ ପ୍ରେମର ଶ୍ରଦ୍ଧା ହଜେ । ଅନ୍ଧାର ଗଳିରେ ସେ ବାଟ ହଜାଏ, ନିଆଁରେ ପୋଡ଼ିହୁଏ କି ପାତାଳରେ ପଶେ । ଆଉ ସେ ପାତାଳରୁ ପ୍ରେମକୁ ଉଦ୍ଧାରି ଆଣିବା ପାଇଁ ଜୀବନକୁ ଦୁଃଖ ଯନ୍ତ୍ରଣାର ନରକ ସନ୍ତାପକୁ ବରଣ କରିବାକୁ ହୁଏ ।

ସ୍ୱର୍ଗ—ସଙ୍ଗୀତର ସବୁ ଉଲ୍ଲାସ ଯେ ଯେଏ ପାତାଳ ଗହ୍ୱରର ଆର୍ତ୍ତନାଦରେ ମିଳାଇଯାନ୍ତି । ସେ ମରଣ—ସଙ୍ଗୀତ କପରି ଯାହା ମୃତ୍ୟୁ ଦେବତାଙ୍କୁ ତୁଷ୍ଟ କରି ତା ହାତରୁ ପୁଣି ପ୍ରେମର ଚିନ୍ମୟୀ ପ୍ରତିମାକୁ ଉଦ୍ଧାର କରିବା ସଂଭବ୍ ହୋଇପାରେ ? ସବୁ ମରଣ—ସଙ୍ଗୀତ ଯେ ଏଠି ଶୋକଗୀତ ବିଳାପ ଆର୍ତ୍ତନାଦ ।

ଯେଉଁ ସଙ୍ଗୀତ ଗାନ କରି ମଣିଷ ଜୀବନଙ୍କୁ, ଅର୍ଫ୍ୟୁସ ଏରୁଡ଼ାଇସଙ୍କୁ ଓ ସାବିତ୍ରୀ ସତ୍ୟବାନଙ୍କୁ ମୃତ୍ୟୁଦେବତା ହାତରୁ ଫେରାଇ ଆଣି ପାରନ୍ତି, ତାହା କେବଳ ପ୍ରେମର ଗୀତ ହୋଇପାରେ ।

ମଣିଷର ପ୍ରେମ ଭାଗ୍ୟକୁ ଦେବତା ବି ଲୋଭ କରେ । ସେଇଥିପାଇଁ ବୋଧହୁଏ ମରଣ ଦେବତା ପାଖରେ ମଣିଷକୁ ପ୍ରେମର ଚରମ ପରୀକ୍ଷା ଦେବାକୁ ହୋଇଥାଏ ।

ମରଣର ସେ ଶୀତଳ ଅନ୍ତଃସ୍ଥଳରେ କଣ ଜୀବନର ଆଦ୍ୟ ଉଷ୍ମାଟି ସ୍ପନ୍ଦିତ ଯାହାକୁ କେବଳ ପ୍ରେମହିଁ ଶୁଣିବାକୁ ସମର୍ଥ ?

ପ୍ରେମର ସେଇ ଆବିଷ୍କାରକୁ ଲଳିତ ସଙ୍ଗୀତରେ ଫୁଟାଇଦେବା ପାଇଁ ମାନବାତ୍ମାର ଏ ଯୁଗ ଯୁଗାନ୍ତର ଜନ୍ମ-ବିଳାସ ?

ପ୍ରେମକୁ ସଙ୍ଗୀତ ବିନା ସେ ପ୍ରକାଶି ଜାଣେନାହିଁ । ସଙ୍ଗୀତକୁ ପ୍ରେମ ବିନା ସେ ଭାଷା ଦେଇ ଜାଣେନାହିଁ । ଅଥଚ ପ୍ରେମ ଓ ସଙ୍ଗୀତ ଉଭୟେ ଏ ମର୍ତ୍ତ୍ୟର ମାନବ ଭାଗ୍ୟରେ ବଞ୍ଚିତ । ପ୍ରେମର ମଧୁରତାକୁ, ସଙ୍ଗୀତର ସ୍ୱର୍ଗୀୟ ମୂର୍ଚ୍ଛନାକୁ ହୃଦୟରେ ଉତାରିବାକୁ ଯାଇ ସେ ପାତାଳର ବହ୍ନିଶିଖାମୟ ଅନ୍ଧାରରେ ବଞ୍ଚିତ ପ୍ରେମର ବିକଳ ଆର୍ତ୍ତନାଦଗୁଡ଼ିଏ ହିଁ ଉଚ୍ଚାରିଯାଏ ।

ନା ପୃଥିବୀର ଭାଷା ବୁଝେ,

ନା ବୁଝାଇପାରେ ଆକାଶକୁ ନିଜ ଭାଷା ।

ଆକାଶ ଓ ପୃଥିବୀର ଅହରହ ସ୍ୱରାଳାପ ପାଖେ ବିସ୍ମିତ ନିର୍ବାକ୍ ଏଇ ଜୀବନ—

ନିଜ ପାଖେ ନିଜେ ହିଁ ଅବ୍ୟକ୍ତ ସଙ୍ଗୀତର ବେଦନାଟିଏ—।



# ଅହଲ୍ୟାର ସିଦ୍ଧି

ଚେତନାର ସବୁ ସ୍ତରରେ ପ୍ରେମର ଆବିର୍ଭାବକୁ ରୂପବନ୍ତ ଦେଖିବାର ଅଭିପ୍ରାୟ ନେଇ ବୋଧହୁଏ ସ୍ରଷ୍ଟା 'ଅହଲ୍ୟା'ର ସୃଷ୍ଟିକୁ ସଂକଳ୍ପ କରିଥିଲେ ।

ସ୍ୱର୍ଗ ଓ ନରକ, ଆଲୋକ ଓ ଅନ୍ଧାର, ବିଷ ଓ ଅମୃତର ଦ୍ୱନ୍ଦ୍ୱମୁଖର ଅହଲ୍ୟା, ମାନବାତ୍ମାର ପ୍ରତିନିଧି ରୂପେ ଦେହ-ମନ-ପ୍ରାଣରେ ବହୁ ବିଚିତ୍ର ଅନୁଭୂତି ସଂଗ୍ରହରେ ଜୀବନର ପ୍ରସ୍ତର-ପରୀକ୍ଷାରେ ନିପୀଡ଼ିତା; ସେ ଅହଲ୍ୟା ସ୍ୱୟଂ ଏକ ପ୍ରଶ୍ନବାଚୀ ।

ଅହଲ୍ୟା କେବଳ ନିଛକ ନାରୀସତ୍ତା ନୁହେଁ; ପୃଥିବୀ ବକ୍ଷରେ ବିକାଶ-ବ୍ୟାକୁଳ ଉଦ୍‌ଭିନ୍ନ ଜୀବସତ୍ତାର ପ୍ରତୀକ, ଯିଏ ବିଭିନ୍ନ ଚେତନାସ୍ତରର ସଂଘାତ ଭିତରେ ଚେତନାନ୍ତର ପ୍ରାପ୍ତ ହେବ । ଊର୍ଦ୍ଧ୍ୱଚେତା, ସୁଚେତା ହେବ । ସେଠାରେ ସତ୍ତାର ସ୍ଥୂଳତମ ଅଭିବ୍ୟକ୍ତି ଯେଉଁ ଦେହ ତାକୁ ଅସ୍ୱୀକାର କରିବାର ଉପାୟ ନାହିଁ । ଦେହବୋଧରେ ନିମଜ୍ଜିତ ରହିଯିବାରେ ମଧ୍ୟ ପୂର୍ଣତା ନାହିଁ । ଇନ୍ଦ୍ରିୟବୋଧର ଅଳୀକତାକୁ ବାସ୍ତବ ଅନୁଭୂତି ମାର୍ଗରେ ଉପଲବ୍‌ଧି କରିଲେ ହିଁ ଚେତନା ଅତୀନ୍ଦ୍ରିୟତାର ଉଦ୍‌ବୋଧନ ଲୋଡ଼ିପାରିବ । ସେ ଉଦ୍‌ବୋଧନରେ ଜାଗ୍ରତ ନ ହେବା ପର୍ଯ୍ୟନ୍ତ ଇନ୍ଦ୍ରବାସନାପାଶ-ବଦ୍ଧ ଅହଲ୍ୟା ଭୋଗ୍ୟା ବସୁନ୍ଧରା ମାତ୍ର । ଗୌତମୀୟ ଅଭିଶାପ ତାକୁ ନିକ୍ଷେପିତ ନିର୍ବେଦତାର ପ୍ରସ୍ତର ଆଘାତ । ଏ ଆଘାତ ଜ୍ଞାନର ଶୁଷ୍କ ଖରରଶ୍ମି ପାତ, ଯାହା ଇନ୍ଦ୍ରିୟ-ସର୍ବସ୍ୱତାର ତୁଚ୍ଛତାକୁ କେବଳ ଅସ୍ୱୀକାର କରେ । ଅତୀନ୍ଦ୍ରିୟତାକୁ ଭୂମିରେ ଆରୋପିତ କରିପାରେ ନାହିଁ ।

ଅହଲ୍ୟାଠାରେ ପ୍ରେମର ଯେଉଁ ବିବର୍ତ୍ତନାତ୍ମକ ପ୍ରକାଶ-ପରୀକ୍ଷାର ଆରମ୍ଭ, ସେ ପରୀକ୍ଷା ଅହଲ୍ୟା ପ୍ରସ୍ତରୀଭୂତା ହେବାରେ ଶେଷ ହୋଇଯାଇ ନାହିଁ । ସଂବେଗର ଜ୍ଞାନହୀନ ଅନ୍ଧ-ଆସକ୍ତି, ଜ୍ଞାନର ଅସହିଷ୍ଣୁ ଅନୁଦାର ଅକରୁଣ ବିଚାର, ଏ ଉଭୟ ଜୀବନର ସଫଳ ପରିଚର୍ଯ୍ୟା ନିମନ୍ତେ ଏକେ ଏକେ ଅସଂଭବ । ଶୁଷ୍କ ଜ୍ଞାନ ତାପରେ ଚିର ଶୁଷ୍କ ଅନୁର୍ବରା ଅହଲ୍ୟା,

ସେ ପୁଣି ଜ୍ଞାନରକ୍ତଭ ବାସନାନଲ ଚାପରେ ସୁକୁମାର ପ୍ରାଣ-ପ୍ରବୃତ୍ତିମାନଙ୍କର ଦଗ୍‌ଧାବଶେଷିତ ନବେଦୋ ପାଷାଣୀ ।

ସେ ପଥରରେ ଜୀବନ ସଂସ୍କୃର ପାଇଁ ଲୋଡ଼ା ପ୍ରେମର ମଧୁରତା, କରୁଣାର ଆର୍ଦ୍ରତା, ଶ୍ରଦ୍ଧାର ଉଦାରତା । କେବଳ ଏକ ପରମପ୍ରେମର କଲ୍ୟାଣମୟ ସ୍ପର୍ଶ ହିଁ ପ୍ରସ୍ତରରେ ଜୀବନର ପୁଷ୍ପିତ ସଂସ୍କୃର କରିପାରେ ।

ଅହଲ୍ୟାର ଜନ୍ମାନ୍ତର, ଏ ପୃଥିବୀ ପାଇଁ ଆଗାମୀର ଏକ ପ୍ରତିଶ୍ରୁତି, ପାର୍ଥିବ ପ୍ରେମ ପାଇଁ ଏକ ଅପାର୍ଥିବ ଦିବ୍ୟଭାବର ଅଂଗୀକାର । ବିବର୍ତ୍ତନର ଧାରାରେ ଜଡ଼ର ନିଷ୍କ୍ରିୟତା, ପ୍ରାଣମୟ ବାସନାର ଲୋଭାସକ୍ତି, ମନଃ-ଚେତନାର ବିସ୍ତୃତ ବିଭ୍ରାନ୍ତ ଦିନେ ଏକ ଶାନ୍ତ ସଂହତ ମଧୁର ଓ ସରସ ଜୀବନ-ଚର୍ଯ୍ୟାରେ ରୂପାନ୍ତରିତ ହେବ, ଅହଲ୍ୟା-ପୃଥିବୀ ଶସ୍ୟ-ସିକ୍ତା ହେବ, ପାଷାଣୀ ଧରିତ୍ରୀ ଚିନ୍ମୟୀ ଜୀବନ୍ମୟୀ ହେବ । ହୃଦୟର ଦିବ୍ୟାନୁରାଗରେ ନବଜାତା ଧରଣୀ ପ୍ରେମର ନବମୂଲ୍ୟାୟନରେ ସମର୍ଥ ହେବ ।

ପ୍ରେମ ଦେହଗତ ବା ଚିତ୍ତଗତ ତା ଆଉ ପ୍ରଶ୍ନ ହୋଇ ରହିବ ନାହିଁ । ଦେହ-ମନ-ପ୍ରାଣକୁ ପରିପୂର୍ଣ୍ଣ ଧାରଣ କରି ମଧ୍ୟ ଦେହାଧୀନ ବା ପ୍ରାଣାଧୀନ କି ମନାଧୀନ ନ ହୋଇ ସେ ପ୍ରତ୍ୟେକଙ୍କ ସହ ଅଦ୍ଭୁତ ସାମଞ୍ଜସ୍ୟ ସୂତ୍ରରେ ଭିନ୍ନ ଏକ ଚେତନାସ୍ତର ସହ ସଂମ୍ବନ୍ଧିତ ରହିବ ।

ଅହଲ୍ୟାର ଚେତନାପ୍ରାପ୍ତି ପାଇଁ ଶ୍ରୀରାମଙ୍କ ସ୍ପର୍ଶ ଅପରିହାର୍ଯ୍ୟ ଥିଲା । କେବଳ ଦୃଷ୍ଟିପାତ ନୁହେଁ, ପଦସ୍ପର୍ଶ ବି । କେବଳ ସୁଦୂର କରୁଣା ନୁହେଁ, ଅନ୍ତରଙ୍ଗ ସ୍ପର୍ଶର ପ୍ରତ୍ୟକ୍ଷତାରେ ହିଁ ସର୍ବୋତ୍ତମ ପ୍ରେମର ସର୍ବଶ୍ରେଷ୍ଠ, ପ୍ରକାଶ । ପ୍ରେମର କ୍ରିୟା ତତ୍‌ପରତା, ଶକ୍ତିମାନ୍ ପରିପ୍ରକାଶ ପାଇଁ 'ପ୍ରତ୍ୟକ୍ଷ-ପାର୍ଥିବ'ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପୃଥିବୀରେ ପ୍ରେମ କେବଳ ସୂକ୍ଷ୍ମ ନିରାଧାର ଭାବରେ ନୁହେଁ, ପ୍ରତ୍ୟକ୍ଷ ଆଧାର-ଭିତ୍ତିରେ ଛନ୍ଦ-ସୌନ୍ଦର୍ଯ୍ୟମୟ ହୋଇ ଧରାଦେଇ ପାରିଲେ ହିଁ ପୃଥିବୀ ପାଇଁ ସାର୍ଥକ ହୁଏ, ପୃଥିବୀକୁ ସାର୍ଥକ କରେ । ଏ ପୃଥିବୀରେ ପାର୍ଥିବର ରୂପାନ୍ତର ଓ ପ୍ରକାଶ ବ୍ୟତିରେକେ ଅପାର୍ଥିବତା କେବଳ ତତ୍ତ୍ୱ ମାତ୍ର ଓ ପୃଥିବୀ ପାଇଁ ନିରର୍ଥକ ଏବଂ ସତ୍ୟର ପ୍ରକାଶ ପାର୍ଥିବତାର ଭୂମିରେ ଘଟି ନ ପାରିଲେ ସତ୍ୟର ସାଧନା ମଧ୍ୟ ଅପୂର୍ଣ୍ଣ । ସେଇ ସତ୍ୟ-

ପ୍ରକାଶର ଦାବୀରେ ଅହଲ୍ୟାଠାରେ ପ୍ରେମର ଯେଉଁ ରୂପାନୁଭୂତିଟି ଆଦ୍ୟ ଉଦ୍‌ବୋଧନ ନେଇଥିଲା, ସେଥିରେ ସ୍ପଷ୍ଟତା ଓ ଛଳନା, ନିର୍ମଳତା ଓ ବାସନା ଉଭୟେ ଅଂଗୀଭୂତ । ତାର ପରିଣତିଟି ମଧ୍ୟ ସେହିପରି ଅସୁନ୍ଦର ବିକଳାଙ୍ଗ । ଆଜି ରାମ ସ୍ପର୍ଶରେ ଅହଲ୍ୟାଠାରେ ନବଜୀବନର ଯେ ଉନ୍ମେଷ—ସେଥିରେ ସମଗ୍ର ପୃଥିବୀର ଭବିଷ୍ୟତ ପାଇଁ ପ୍ରେମର ଏକ ସବଳ ପ୍ରତିଶ୍ରୁତି ସଂଗୁପ୍ତ ଯେ—ସତ୍ତାର ସର୍ବାଂଶକୁ, ସେଇ ସୂତ୍ରରେ ତାର ଦେହକୁ ମଧ୍ୟ ଦିନେ ଦିବ୍ୟପ୍ରେମର ସ୍ପର୍ଶ ମିଳିବ ଓ ଦେହ ସେ ପ୍ରେମକୁ ମର୍ଯ୍ୟାଦା ଦାନ କରିବାର ସାମର୍ଥ୍ୟ ଲାଭ କରିବ ।

ଅହଲ୍ୟାର ଅସଫଳତା ଥିଲା ପୃଥିବୀର ଏକ ତାତ୍କାଳିକ ଅସଫଳତା, ଆଜି ରାମସ୍ପର୍ଶ ତାର ସଫଳ ଭବିଷ୍ୟତର ପ୍ରତିଶ୍ରୁତି । ସୃଷ୍ଟିର ଆରମ୍ଭ କାଳରୁ ପୃଥିବୀ ସେ ଦିବ୍ୟ-ଅଂଗୀକାରକୁ ତାର ମର୍ମମୂଳରେ ବୁଝିଛି ବୋଲି ହିଁ ବାରମ୍ବାର ଇନ୍ଦ୍ରିୟ-ବାସନାର ସୀମାକୁ ଶେଷ କି ଶୁଷ୍କ ଜ୍ଞାନର ଗୌତମୀୟ-ଶୃଙ୍ଖଳାକୁ ଚରମ ବୋଲି ମାନି ନେଇପାରି ନାହିଁ । ଫଳତଃ ଉଭୟଙ୍କ ଦ୍ୱାରା ନିପୀଡ଼ିତ ରହିଛି, ତଥାପି ଅସୀମର ଅପେକ୍ଷାରେ ଧୈର୍ଯ୍ୟ ହାରିନାହିଁ ।

ଅହଲ୍ୟାର ଦୁର୍ବଳତା ସତ୍ତାତ୍ମକ ଦୁର୍ବଳତା, 'ମଣିଷ'ର ଦୁର୍ବଳତା । ସେ ଦୁର୍ବଳତା କିନ୍ତୁ ଏକମାତ୍ର ଅହଲ୍ୟାଙ୍କର ନାରୀସତ୍ତାର ନୁହେଁ । ତାହା ଇନ୍ଦ୍ରଙ୍କର ପୁଣି ଗୌତମଙ୍କର ପୁରୁଷସତ୍ତାର ବି ଅହଲ୍ୟା ହୁଏତ ଇନ୍ଦ୍ରଙ୍କୁ ପ୍ରେମ ଶକ୍ତିରେ ଆଉ ଗୌତମଙ୍କୁ ଜ୍ଞାନ ଶକ୍ତିରେ ପୂର୍ଣ୍ଣ ଓ ସ୍ଥିର ବୋଲି ହୁଏତ ଗ୍ରହଣ କରି ନେଇଥିଲେ । ମାତ୍ର ଆତ୍ମଶକ୍ତିରେ ଦୁର୍ବଳ ଉଭୟ, ଜଣେ କାମବଶ, ଅନ୍ୟଟି କ୍ରୋଧ-ବଶ । ପୃଥିବୀର ପୂର୍ଣ୍ଣଜ୍ଞାନ ଲାଭ ପଥରେ ଦୁଇଟି ବଳବତ୍ତର ପ୍ରବୃତ୍ତି ପ୍ରତି-ବନ୍ଧକ,—କାମ, କ୍ରୋଧ ଏବଂ ଉଭୟଙ୍କର ଉତ୍ସମୂଳ ଏକ ଆଦ୍ୟ ଚିତ୍ତବୃତ୍ତି ଅହଂକାର । ଉପଭୋଗର ଅଧିକାରୀତ୍ୱ ଅହଂକାର । ଇନ୍ଦ୍ର ଓ ଗୌତମ କେହି ଏ ଦୃଷ୍ଟିରୁ ସିଦ୍ଧ ନୁହଁନ୍ତି । ଜଣେ ଭୋଗ କରିବାର ଲାଳସାରେ ଦିଗଭ୍ରଷ୍ଟ, ଅନ୍ୟ ଜଣେ ଭୋଗାଧିକାର ବଞ୍ଚିତ ବୋଲି ବିକ୍ଷୁବ୍ଧ। ଉଭୟଙ୍କ ବିଚାରର ରୂପ-ପ୍ରଣାଳୀଟି ଏକ, ନାରୀ ପ୍ରଥମତଃ ଭୋଗ୍ୟା ଏବଂ ଦୈହିକ ଭାବେ ଭୋଗ୍ୟା । ଦେହୋପଭୋଗୀ ସହ ତାର ଆନୁଗତ୍ୟ ଲାଭ, ଏ ସବୁ ତ ଆନୁଷଙ୍ଗିକ । ଇନ୍ଦ୍ରଙ୍କ ଭୋଗ ଲାଳସା ଏବଂ ଗୌତମଙ୍କର ଅଧିକାର ଚେତନାର କେନ୍ଦ୍ରୀଭୂତ

ମୂର୍ତ୍ତିଟି ଅହଲ୍ୟାଙ୍କର ମାନବୀୟ ସତ୍ତାତ୍ମକତା ନୁହେଁ, ତାହା ତାଙ୍କର ଏକାନ୍ତ ନାରୀତ୍ୱ। ଉଭୟଙ୍କ ପାଇଁ ଅହଲ୍ୟା ଏକମାତ୍ର ନାରୀଟିଏ । ସେ ପୁରୁଷର ଭୋଗ-ଉପଜୀବ୍ୟ ଏବଂ ଏହି ଭୋଗର ଅନୁଗ୍ରହ ହିଁ ନାରୀତ୍ୱର ସାର୍ଥକତାର ଭାଗ୍ୟ ।

ଇନ୍ଦ୍ର ଓ ଗୌତମ ଉଭୟେ ନାରୀଠାରେ ପୁରୁଷର ଆଧିପତ୍ୟ—ଏହି ସାମାଜିକ ମନସ୍ତତ୍ତ୍ୱର ପ୍ରତିନିଧିତ୍ୱ କରନ୍ତି, ଯେଉଁଠି ପୁରୁଷର ସୁସ୍ଥ ଜୀବନ ଧାରଣ ପାଇଁ ନାରୀ ଏକ ପରିଚର୍ଯ୍ୟାକାରିଣୀ ମନୋହାରିଣୀ ଯନ୍ତ୍ରବିଶେଷ । ସମାଜରେ ତାର ଭୂମିକା ପୁରୁଷ ସାପେକ୍ଷ; ପୁରୁଷର ସୁସ୍ଥ ସାମାଜିକ ଜୀବନ ପାଇଁ, ପୁରୁଷର ବଂଶ ପରମ୍ପରା ପ୍ରତିଷ୍ଠା ପାଇଁ ନାରୀର ଆତ୍ମନିୟୋଗ ଓ ଆତ୍ମବିସ୍ମରଣ, ସ୍ୱ ସତ୍ତା-ବିସ୍ମରଣ ଅପରିହାର୍ଯ୍ୟ ।

ଇନ୍ଦ୍ର ଓ ଗୌତମ ଉଭୟେ ଏ ଦୃଷ୍ଟିରୁ ଅପୂର୍ଣ୍ଣ । ଅସ୍ତିତ୍ୱ ବିଗ୍ରହରେ ସତ୍ତାର ଲିଂଗଭେଦ ନାହିଁ। ସତ୍ତା ସ୍ତ୍ରୀ ବା ପୁରୁଷ ଭେଦବୋଧକ ନୁହେଁ । କିନ୍ତୁ ଇନ୍ଦ୍ରଙ୍କ ଭୋଗ ବୁଦ୍ଧି ଅହଲ୍ୟାଙ୍କ ଭୋଗ୍ୟ-ସତ୍ତା ନିକଟରେ କେବଳ ନିବଦ୍ଧ ରହିନାହିଁ। ଗୌତମଙ୍କ ଜ୍ଞାନୀ ଦୃଷ୍ଟି ମଧ୍ୟ ଅହଲ୍ୟାଙ୍କ 'ନାରୀତ୍ୱ-ମାତ୍ର'ଠାରେ ଆବଦ୍ଧ ରହିଛି । ତାଙ୍କର ପ୍ରବୁଦ୍ଧ ତପଃ-ସାମର୍ଥ୍ୟ ସତ୍ତା-ଅନ୍ତର୍ଗତ ସାଧାରଣ ଜୀବନାବେଗଟିକୁ ଆବିଷ୍କାର କରିପାରିଲା ନାହିଁ । ତେଣୁ ସେ ଯଥାର୍ଥ ଋଷିକ ନୁହନ୍ତି, କେବଳ ସାମାଜିକ, ପୁରୁଷ-ସମାଜ-ବଦ୍ଧ ରହିଛନ୍ତି। ଶାସ୍ତ୍ରୀୟ-ବିଗ୍ରହର ଊର୍ଦ୍ଧ୍ୱକୁ ଉଠିପାରି ନାହାନ୍ତି । ଦେଶ-କାଳାବଦ୍ଧ ଖଣ୍ଡିତ ବିଗ୍ରହ ପଣ୍ଡିରେ ପ୍ରାଣସତ୍ତାର ଶାଶ୍ୱତ ପ୍ରକାଶକୁ ଧରିପାରି ନାହାନ୍ତି । ସମାଜର ସ୍ଥିତି ପାଇଁ ସାମାଜିକ ରୀତିବନ୍ଧନ ଓ ଶାସ୍ତ୍ର-ବିଗ୍ରହର ଆବଶ୍ୟକତା ରହିଛି । ଅସାମାଜିକ ବ୍ୟଭିଚାରୀ ବିଶୃଙ୍ଖଳା ଭିତରେ ପଥ ହରାଉଥିବା ବ୍ୟକ୍ତି-ଜୀବନକୁ ସଂହତ କରି ରଖିବା ସମାଜ ବନ୍ଧନର କାର୍ଯ୍ୟ । ମାତ୍ର ବ୍ୟକ୍ତି କେବଳ ସାମାଜିକ ଜୀବ ନୁହେଁ । ସମାଜ ତାର ଲକ୍ଷ୍ୟ ନୁହେଁ, ତାର ବ୍ୟକ୍ତିତ୍ୱର ବିକାଶ ପଥରେ ଉପଲକ୍ଷ୍ୟ ମାତ୍ର । ପୂର୍ଣ୍ଣ-ବ୍ୟକ୍ତିତ୍ୱର ପ୍ରତିଷ୍ଠା ପଥରେ ସାମାଜିକତା ଏକ ପ୍ରୟୋଜନୀୟ ସୋପାନ-ଶ୍ରେଣୀ ମାତ୍ର। ସମାଜ ଭିତରୁ **ଆତ୍ମ**ବିକାଶର ସୁଯୋଗ ସୃଷ୍ଟି କରିବା ପାଇଁ ବ୍ୟକ୍ତି ସମାଜ ଗଢ଼ିଛି । ନିଜକୁ ସାମାଜିକତାର ଅନ୍ତର୍ଭୁକ୍ତ କରିଛି। ମାତ୍ର ଯେତେବେଳେ ତାରି ହାତଗଢ଼ା ସମାଜର ନିୟମ ତା ପାଇଁ ଶୃଙ୍ଖଳ ହୋଇ ତାର ଆତ୍ମବିକାଶକୁ ବ୍ୟାହତ କରିଛି, ସେତେବେଳେ ବିକାଶ-

ଊନ୍ମୁଖୀ ସତ୍ତାର ପ୍ରାଣିକ ତାଡ଼ନା ସ୍ୱତଃ ସମାଜର ବିରୁଦ୍ଧାଚରଣକୁ ପ୍ରୟୋଜନ ମନେକରିଛି ।

ପୁଣି ମଣିଷ କେବଳ ପ୍ରାଣିକ ସତ୍ତା ନୁହେଁ । ପଶୁ ନୁହେଁ ଯେ କେବଳ ବାସନା-ପୂର୍ତ୍ତିରେ ଜୀବନ-ଚର୍ଯ୍ୟାର ସଂତୃପ୍ତି ମିଳିଯିବ । ପ୍ରାଣିକ ଆବେଗମାନ ଯେତେ ଲୋଭନୀୟ ମଧୁମୟ ମନେହେଲେ ବି ବାସନାଗ୍ନିର ଦାବାନଳରେ ଦିନେ ଛାରଖାର ହୋଇଯିବେ । ତେଣୁ ବାସନାର ଊର୍ଦ୍ଧ୍ୱରେ ଜୀବନର ମହିମାମୟ ସତ୍ୟକୁ ପ୍ରତିଷ୍ଠା କରିବାର ଉଦ୍‌ଯୋଗରେ ସତ୍ତା ନିତ୍ୟ ନୂତନ ପଥର ସନ୍ଧାନୀ । ପ୍ରାଚୀନର କାରାଗାର ଭାଙ୍ଗି ନବଦିଗନ୍ତର ସନ୍ଧାନ ଲୋଡ଼ିବା ପାଇଁ ତାକୁ ବେଳେବେଳେ ବିଦ୍ରୋହୀର ଭୂମିକା ଗ୍ରହଣ କରିବାକୁ ପଡ଼ିପାରେ । ଚିରାଚରିତତା ବିରୋଧରେ ଚିରନ୍ତନତା ଯୁଗେ ଯୁଗେ ବିଦ୍ରୋହର ବହ୍ନି ବହନ କରି ସତ୍ୟର ଅଗ୍ନି-ପରୀକ୍ଷା ଦେଇଛି । ପୂର୍ଣ୍ଣ ମାନବିକ ବୋଧର ମର୍ଯ୍ୟାଦା ପ୍ରତିଷ୍ଠା ପାଇଁ ସତ୍ତା ସାମାଜିକତା ଭଳି ବହୁ କ୍ଷୁଦ୍ରତାର ଅବରୋଧ ଉଲ୍ଲଙ୍ଘନ କରିବାକୁ ପ୍ରୟାସ କରିଛି । ଏହା ହିଁ ମହାକାଳ ବକ୍ଷରେ ଏକମାତ୍ର କାଳୋତ୍ତୀର୍ଣ୍ଣ ସତ୍ୟ ।

ଜୀବନ ବହୁମୁଖୀ, ତା'ର ଚିତ୍ତବୃତ୍ତି ଓ ମନନ ଶକ୍ତି ଉଭୟ ବିକାଶଶୀଳ। ସତ୍ତାର ଆତ୍ମବିକାଶର ଏ ପ୍ରବଣତା ସ୍ୱତଃ, ଦୁର୍ମଦ । ଗିରିସ୍ରୋତକୁ କେହି ତଟର ବନ୍ଧନ ଦେଇ ନଦୀ କରିପାରେ, ସଂହତ କରିପାରେ । ମାତ୍ର ତଟମାନେ ହିଁ ବନ୍ଧନ ଏବଂ ସେଇଥିପାଇଁ ଅବକାଶ ପାଇବା ମାତ୍ରେ ସେ ତଟ ଉଚ୍ଛୁଳାଇ ଥାଏ । ସମଗ୍ର ଜଳାଧାର ସହ ଏକାକାର ହେବା ପ୍ରତିଟି କ୍ଷୁଦ୍ର ଜଳବିନ୍ଦୁର ସ୍ୱାଭାବିକ ପ୍ରବୃତ୍ତି । ସେଇଥିପାଇଁ ବର୍ଷାର ଆକାଶ, ଊର୍ମିଳ ସମୁଦ୍ର, ସବୁକିଛି ସହ ତାର ସଂଯୋଗ ପ୍ରତିଷ୍ଠାର ଅଦ୍ଭୁତ ବ୍ୟାକୁଳତା ।

ଇନ୍ଦ୍ରଙ୍କର ଭୋଗ-ଲୋଲୁପତା ଅହଲ୍ୟାଠାରେ ଏକ—ଉପଭୋଗ୍ୟ ନାରୀ-ରୂପୀ ସାମଗ୍ରୀକୁ ଦେଖିବା, ଗୌତମଙ୍କର ପୁରୁଷର ଅହମିକାଯୁକ୍ତ ଦୃଷ୍ଟିର ଅନ୍ଧତା ଅହଲ୍ୟାଙ୍କର 'ନାରୀ' ପରିଚୟ ମାତ୍ରରେ ଆବଦ୍ଧ ରହିଯିବା, ପୃଥିବୀର ଦୁର୍ଭାଗ୍ୟରୂପୀ ଏଇ ଦୁଇ ଦେଶକାଳପାତ୍ର-ନିବଦ୍ଧ ଖଣ୍ଡିତ ଅନ୍ଧଦୃଷ୍ଟି ଦେଶକାଳର ଉପରେ ଥିବା ଚିରନ୍ତନତାକୁ ନିରେଖି ପାରିଲେନାହିଁ । ଜୀବନର ଗଭୀରତାରୁ ଶାଶ୍ୱତର ଅପ୍ରତିହତ ସଂବେଗକୁ ଧରିପାରିଲେ ନାହିଁ ଏବଂ ଏହା

ମଧ୍ୟ ସ୍ୱତଃସିଦ୍ଧ ଯେ ଜୀବନାବେଗ ତାର ସ୍ୱପ୍ରକାଶୀ ଶକ୍ତିର ପ୍ରଭାବରେ ସକଳ ପାର୍ଥିବ ଅସାମର୍ଥ୍ୟକୁ ବାରମ୍ବାର ପରିତ୍ୟାଗ କରୁଥିଲା । ଗୌତମ ଓ ଇନ୍ଦ୍ର ତେଣୁ ଉଭୟେ ତା ଦ୍ୱାରା ପରିତ୍ୟକ୍ତ ହେଲେ । ଇନ୍ଦ୍ରଙ୍କର ଦିବ୍ୟଶକ୍ତି ବା ଗୌତମଙ୍କ ତପଃ-ଶକ୍ତି ସେ ଦୁହିଁଙ୍କୁ କାଳଜୟୀ କରି ରଖିପାରିନଥାନ୍ତି ଏବଂ ଜୀବନ ଅପେକ୍ଷା କରି ରହିଲା ଆଉ ଏକ ଉଚ୍ଚତର ସାମର୍ଥ୍ୟ ବିନ୍ଦୁକୁ, ଦିବ୍ୟ ପ୍ରେମର ମାନବୀୟ ଆବିର୍ଭାବକୁ; ଐଶୀ କରୁଣାର ଶାଶ୍ୱତିକ ରୂପାନ୍ତରକୁ ।

ଜ୍ଞାନ ସାମାଜିକତା ଦ୍ୱାରା ନିର୍ଜିତ ହେଲେ ସ୍ୱୟଂ ବର୍ଜିତ ହୁଏ । ମାତ୍ର ସେ ଜ୍ଞାନ-ପ୍ରେମଯୁକ୍ତ ହେଲେ ସାମାଜିକତାର କ୍ଷୁଦ୍ରତାକୁ ଅତିକ୍ରମ କରି ପୂର୍ଣ୍ଣ ମାନବିକତା ସହ ସଙ୍ଗତି ପ୍ରତିଷ୍ଠା କରିପାରେ । ପ୍ରେମ କେବେ ଅସାମାଜିକ ନୁହେଁ, ସାମାଜିକତାର ଊର୍ଦ୍ଧ୍ୱରେ; ସ୍ୱୈରଚାର ନୁହେଁ, ସ୍ୱତଃସ୍ଫୂର୍ତ୍ତ । କାରଣ ପ୍ରେମ ତାର ଯଥାର୍ଥ ରୂପରେ ଉପଭୋଗ ଓ ଅଧିକାର ସଂପର୍କରେ ପ୍ରକଟିତ ନୁହେଁ ।

ଅହଲ୍ୟା ଉପାଖ୍ୟାନରେ ଜୀବନ ତିନିପ୍ରକାର ଅସ୍ତିତ୍ୱର ରୂପପ୍ରକାଶକୁ ଭେଟିଛି । କାମର ଉପଭୋଗ, ଜ୍ଞାନର ଭେଦ ବିଚାର, ପ୍ରେମର ଦ୍ୱିଧାହୀନ ସ୍ୱୀକୃତି । ଉପଭୋଗର ବଳବତ୍ତର ବାସନାରେ ଉପଭୋଗ୍ୟ ଭୋକ୍ତାଠାରୁ ଭିନ୍ନ, ଜ୍ଞାନର ବିଚାର ଦୃଷ୍ଟିରେ ମଧ୍ୟ ବିଚାରକ ଓ ବିଚାରଣୀୟର ଭେଦାତ୍ମକତା ଅନିବାର୍ଯ୍ୟ, ମାତ୍ର ପ୍ରେମରେ ହିଁ ସତ୍ତା ସହ ସମଗ୍ରତାର ଅନ୍ୱିତି ସଂଭବ । ତେଣୁ ରାମପ୍ରେମ ସୁକ୍ଷମୀ, ସକଳ ଅସାମର୍ଥ୍ୟକୁ ନିଜର ସାମର୍ଥ୍ୟରେ ପରିପୂର୍ଣ୍ଣ କରି ମଣିଷକୁ ଦ୍ୱିଧାହୀନ ଅକୁଣ୍ଠ ଗ୍ରହଣ କରିନେଇଛି ।

ପ୍ରେମ କେବଳ ଆତ୍ମା ସହ ସଂପର୍କିତ । ରୂପ ବିଭିନ୍ନତା, ଦୈହିକ ପାର୍ଥକ୍ୟ ସେ ବୁଝେନାହିଁ । ତେଣୁ ରାମ ଅହଲ୍ୟାକୁ ସହୃଦୟତାର ସ୍ପର୍ଶଟିକକ ଛୁଆଁଇ ଦେବାରେ କରୁଣା ହରମାଳିନୀ ଗଙ୍ଗାଜଳ ଅହଲ୍ୟାର ପାବତ୍ୟ ବୁକୁରେ ଉଚ୍ଛୁଳା ହୋଇପଡ଼ିଥିଲା । ପ୍ରେମର ସେଇ ପୂର୍ଣ୍ଣତାକୁ ପାଇ ନ ଥିଲେ ବୋଲି ଗୌତମ ପରାଜିତ, ଇନ୍ଦ୍ର ଲାଞ୍ଛିତ; ମାତ୍ର ସେଇ ପ୍ରେମକୁ ବିଶ୍ୱାସରେ ଅପେକ୍ଷା ରଖିଥିଲେ ବୋଲି ଅହଲ୍ୟା ଆୟୁଷ୍ମତୀ ହେଲେ । ସତ୍ୟରେ, ଚିରନ୍ତନତାରେ ଅହଲ୍ୟାଙ୍କର ସହଜ ପ୍ରତ୍ୟୟ, ନିରଳସ ତୃପ୍ତି— ତ୍ରୟୋସ ରହିଥିବା ହେତୁ ସେ 'ସତୀ'ର ପରିଚୟରେ ବଞ୍ଚି ରହିଲେ ।

ସତ୍ତ୍ୱ ନିର୍ବନ୍ଧନ, ଚିରମୁକ୍ତ । ନାରୀ, ପୁରୁଷ, ଶାସ୍ତ୍ର, ସମାଜ ସବୁ ବିଭେଦ ବନ୍ଧନ ଭିତରେ ଗ୍ଲାନି ପୀଡ଼ିତ ନ ହୋଇ ବରଂ ସେ ସବୁକୁ ଅତିକ୍ରମ କରି ଆକାଶରେ ପବନ ଭଳି ଯାହା ନିର୍ବାଧ-ସଞ୍ଚାରିତ, ତାହା ହିଁ ଅସ୍ତିତ୍ୱ ପ୍ରକାଶର ସତ୍ୟତମ ବାର୍ତ୍ତା ।

ମାତ୍ର ଧରିତ୍ରୀବକ୍ଷରେ ସତ୍ୟର ଆବିର୍ଭାବ ସବୁବେଳେ ଦ୍ୱନ୍ଦ୍ୱ ଓ ବିରୋଧ ଭିତରେ ଘଟିଛି, ସହଜ ସୁନ୍ଦର ଭାବରେ ନୁହେଁ । ବିବର୍ତ୍ତନ ଧାରାରେ ସ୍ଥିତାବସ୍ଥାର ସୀମାକୁ ଉଲ୍ଲଙ୍ଘନ କରି ଉନ୍ମୋଚିତ ମାର୍ଗ ଉତ୍ଥାନପାଦ ସତ୍ୟକୁ ଦ୍ରୋହୀର ଲାଞ୍ଛନା ଭୋଗିବାକୁ ପଡ଼ିଛି । ବ୍ୟକ୍ତିବିଶେଷ ସେଠି ଉପଲକ୍ଷ୍ୟ ମାତ୍ର ।

ତଥାପି ସତ୍ୟ ମୁହଁ ଲୁଚାଇବ ନାହିଁ । ବରଂ ଇନ୍ଦ୍ର ମୁହଁକୁ ପା ଦେଇ ରହିବେ । ବାସନାଭୋଗର କ୍ଲାନ୍ତିରେ ଇନ୍ଦ୍ରିୟମାନେ ବିକଳାଙ୍ଗ ହୋଇଯିବେ । ଇନ୍ଦ୍ରିୟର ଶକ୍ତିମାନେ ଶ୍ରାନ୍ତ ଓ ବିଲୁପ୍ତ ହୋଇଗଲା ପରେ ଇନ୍ଦ୍ର ତେଜହୀନ, ପ୍ରଭାହୀନ ଓ ଦୃଶ୍ୟହୀନ ହୋଇଯିବେ ।

ପ୍ରେମ କିନ୍ତୁ ସଦରଦରଜା ଫାଟକ ଦେଇ ଆସିବ । ସର୍ବ ସମ୍ମୁଖରେ ନିଜର ପୁଷ୍ପାସନ ଉପରେ ସଗୌରବେ ପ୍ରତିଷ୍ଠିତ ହେବ । ପ୍ରେମର ଦୃଷ୍ଟି ଙ୍କାର୍ଯ୍ୟକ ନୁହେଁ, କୁଟିଳ ନୁହେଁ, ତାର ସ୍ୱର ଛଳନାତ୍ମକ ନୁହେଁ । ପ୍ରେମର ସବୁ ପ୍ରକାଶ ସ୍ୱୟଂ ପ୍ରେମ ପରି ହିଁ ସ୍ପଷ୍ଟ, ସରଳ, ଉଷାଲୋକର ଉଦ୍‌ଭାସ । ନିଜ ଆବିର୍ଭାବର ଆନନ୍ଦକୁ ସେ ମଧୁର ଆବେଗ ସ୍ପନ୍ଦନରେ ଅଜାଡ଼ିଦେବ, ପଦସ୍ପର୍ଶ ମାତ୍ରକେ ଆପଣାର ଅକୁଣ୍ଠ ଜୀବନାବେଗକୁ ପାଷାଣର ଶିରାରେ ସଂଚାରିଦେବ ।

ଅହଲ୍ୟାର ଯୋଗ୍ୟତା ବିଚାର-ଜ୍ଞାନ କରିପାରେ, ଗୌତମ କରି-ପାରନ୍ତି, ମାତ୍ର ରାମ ସେ ବିଚାରରେ ଆବଦ୍ଧ ନୁହନ୍ତି । ଗୌତମଙ୍କର ବିଚାରର ଅହଂକାର—ଅନ୍ଧ ଦୃଷ୍ଟି ପାପ ପୁଣ୍ୟର ଭେଦ ଖୋଜିପାରେ । ଜ୍ଞାନ ଭଲମନ୍ଦ ଚିହ୍ନିତ କରେ, କାହିଁକି କପରି ହୁଏତ ବୁଝେ, ମାତ୍ର ପ୍ରତିକାର ଜାଣେନାହିଁ । ପ୍ରତିକାର କରିପାରେ ନାହିଁ ବୋଲି କ୍ରୁଦ୍ଧ ହୁଏ, ଅଭିଶାପ ଦିଏ, ଜୀବନକୁ ପଥର କରିଦିଏ ।

ଜ୍ଞାନ କେବଳ ଆପଣା ସାମର୍ଥ୍ୟକୁ ଚିହ୍ନେ, ଅନ୍ୟର ଅସାମର୍ଥ୍ୟକୁ ବୁଝି-ପାରେନା । କିନ୍ତୁ ପ୍ରେମ ଆପଣାର ସାମର୍ଥ୍ୟ ଓ ଅନ୍ୟର ଅସାମର୍ଥ୍ୟକୁ ବୁଝିଥାଏ

ବୋଲି ତ ହାହାଶୂନ ହୋଇ ରହିପାରେ, ସବୁ ସହିପାରେ, ପ୍ରତିକାର କରିପାରେ । ଜ୍ଞାନ ଅହଙ୍କାରୀ, ଅନୁଦାର, ଅସହିଷ୍ଣୁ । ମାତ୍ର ପ୍ରେମ ଉଦାର, ସହିଷ୍ଣୁ, ତେଣୁ ସେ ପଥରକୁ ଜୀବନ ଦିଏ, ଅନଙ୍ଗକୁ ଅଙ୍ଗାବରଣ ଦିଏ ।

ଇନ୍ଦ୍ର ଶକ୍ତିମନ୍ତ, ଗୌତମ ଜ୍ଞାନବନ୍ତ, କେହି ପ୍ରେମ-ସ୍ନିଗ୍ଧ ନୁହନ୍ତି । ଉଭୟଙ୍କଠାରେ ସେମାନଙ୍କର ଐଶ୍ୱର୍ଯ୍ୟ 'ଶକ୍ତି ଓ ଜ୍ଞାନ' 'ଅଧିକାରୀର' ଅହଂକାରରେ ପ୍ରତିଷ୍ଠିତ । ଉଭୟେ ଅହଂ ବଳସିତ, ପୁଣି ଇନ୍ଦ୍ରଙ୍କ ଶକ୍ତି ଜ୍ଞାନ ବର୍ଜିତ ହେତୁ ସ୍ଥୂଳ । ସେ ହୁଏତ ଲୁଣ୍ଠନ କରେ କିମ୍ବା ବିମୂଢ଼ କରେ । ଦୁଇଟି ନିଷ୍ଠୁର ହାତର ଏ ଦ୍ୱିବିଧ ନିଦାରୁଣ ଧର୍ଷଣରେ ବିମୂଢ଼ା ଅହଲ୍ୟା ପଥର ପାଲଟିଯିବା ଛଡ଼ା ଆଉ କଣ ଭିନ୍ନ ଗତି ଥିଲା ?

ମାତ୍ର ଜ୍ଞାନ ଓ ପ୍ରେମ, ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟ, ସହିଷ୍ଣୁତା ଓ ଉଦାରତାର ମଧୁର ପ୍ରେମ-ରୂପ ଯେ ରାମ-ସୁଭଦ୍ର, ପଥରରେ ସେଇ କେବଳ ଜୀବନ-ସଂଚାର କରିପାରନ୍ତି ।

ଅହଲ୍ୟା କୃତଜ୍ଞ, ରାମ ପ୍ରେମ କରି କୃତାର୍ଥ । ପ୍ରେମର ଏକମାତ୍ର ଲକ୍ଷ୍ୟ ଆନନ୍ଦ, ଚିରନ୍ତନ ଜୀବନ । ରାମପ୍ରେମ ମୃତକୁ ଜୀବନ୍ତ କରିପାରେ, ଅଶ୍ରୁସନ୍ତାପକୁ ସହାସ ମଧୁର କରିପାରେ, ତାହା ହିଁ ମହାକାଳ ବକ୍ଷରେ ପ୍ରେମର ଅମର ସାଧନାର ସାର୍ଥକ-ସିଦ୍ଧ ମୁହୂର୍ତ୍ତ । ମରଣଶୀଳ ପୃଥିବୀ ପାଇଁ ଏହାଠାରୁ ବଳି ବଡ଼ ସିଦ୍ଧି ଆଉ କ'ଣ ଥାଇପାରେ ?

ଅହଲ୍ୟାଙ୍କର ମୁକ୍ତିରେ ଗୌତମଙ୍କର ମଧ ମୁକ୍ତି । ଗୌତମଙ୍କ ରୋଷକଷାୟିତ ଦୃଷ୍ଟିରେ ଅହଲ୍ୟା କେବଳ ନିର୍ଜୀବ ହୋଇନଥିଲେ, ଗୌତମ ମଧ ତପୋଭ୍ରଷ୍ଟ ହୋଇଥିଲେ ଏବଂ ସେ ପର୍ଯ୍ୟନ୍ତ ସେ ତପଃସିଦ୍ଧ ନୁହନ୍ତି ଯେ ପର୍ଯ୍ୟନ୍ତ ତାଙ୍କ ଦୁର୍ବଳତାର ସ୍ମାରକୀ-ରୂପ ଅହଲ୍ୟା ରାମ କରୁଣା ଲଭିର ଆଶୀର୍ବାଦ ପାଇନାହାନ୍ତି ।

ପ୍ରେମଶକ୍ତିର ବିଜୟ ପରେ ହିଁ କ୍ରୋଧଶକ୍ତିର ଅବକ୍ଷୟ । ରାମ-ଅନୁଗ୍ରହ ବ୍ୟତୀତ ଗୌତମଙ୍କ ଶକ୍ତି ଚିରଦିନ ଏକ ଜୀବନଧ୍ୱାଂସୀ ଅପଶକ୍ତି ରୂପେ ନିହିତ ରହିଯାଇଥାନ୍ତା, ଯାହା ଧ୍ୱଂସ କରିପାରେ କିନ୍ତୁ ସୃଷ୍ଟି କରିପାରେ ନାହିଁ । ମାତ୍ର ପ୍ରେମର ଅଭିନବ କାରୁକାର୍ଯ୍ୟରେ ଅହଲ୍ୟା ଓ ଗୌତମ ଉଭୟେ ସିଦ୍ଧ ହେଲେ ।

ସାମାଜିକତା ଏକ ଯୁଗୀୟ ଆବଶ୍ୟକତା । ମାତ୍ର କାଳକୁ ଲଙ୍ଘନ କରି କାଳାନ୍ତରକୁ ଯାତ୍ରା କରିବାପାଇଁ ସତ୍ତାର ପ୍ରୟାସ ମୂଳରେ ଐଶ୍ୱରିକ ଆଶୀର୍ବାଦ ରହିଛି । ତାହା ହିଁ ରାମଚେତନା ଭିତରେ ବାଲ୍ମୀକଙ୍କ କବିଦୃଷ୍ଟି ସଂକେତିତ କରିଛି । ଗୌତମ ଆର୍ଯ୍ୟଋଷି । ମାତ୍ର ବାଲ୍ମୀକି କବିଋଷି । ଅହଲ୍ୟା ଇନ୍ଦ୍ର/ଗୌତମଙ୍କ ଦୃଷ୍ଟିରେ ମାନବୀଟିଏ ହୋଇପାରନ୍ତି; ମାତ୍ର ସ୍ରଷ୍ଟା-କବିର ନିକାଳଜ୍ଞ ପ୍ରେରଣା ସମ୍ମୁଖରେ ସେ ସେଇ ଆଦ୍ୟମା ପରମା ସତ୍ତା ରୂପିଣୀ ଯାହା ଜୀବ ଭିତରେ ଜୀବନର ପୂର୍ଣ୍ଣ ସ୍ୱରୂପକୁ ଉପଲବ୍ଧ କରିବାକୁ ଯତ୍ନଶୀଳା । ଗୌତମ ଏକ ନିର୍ଦ୍ଦିଷ୍ଟ ବିଶ୍ୱାସଧାରାର ପ୍ରତିନିଧି, ଯାହା ସେହି କାଳପରିଧିର ଶକ୍ତି ଓ ଦୁର୍ବଳତାକୁ ନିର୍ଣ୍ଣୀତ କରିଦିଏ । ରାମ-କରୁଣା କିନ୍ତୁ ସକଳ ଦ୍ୱନ୍ଦ୍ୱାତ୍ମକତାରୁ ମୁକ୍ତ, ଚେତନାର ନିର୍ଦ୍ୱନ୍ଦ୍ୱ ନିଜ ରୂପ ସହ ସଂବନ୍ଧିତ । ସତ୍ତା କାଳାବଦ୍ଧ ଓ ଦେଶବଦ୍ଧ ରହି ଚେତନାବିକାଶର କାଳାତୀତ ମାର୍ଗ ସନ୍ଧାନ କରେ । ମାତ୍ର ସବୁ ଦେଶକାଳର ଊର୍ଦ୍ଧ୍ୱରେ ବିଭୁପ୍ରେମର ଜୟଗାନ । ଦାଶରଥି ରାମ କି ଅହଲ୍ୟା ଗୌତମଙ୍କ ପରି ଯୁଗପୁରୁଷ ହୋଇପାରନ୍ତି, ମାତ୍ର ଅହଲ୍ୟାଙ୍କ ତାରଣକାରୀ ଶ୍ରୀରାମଙ୍କ ଆବିର୍ଭାବ ବ୍ୟକ୍ତିରୂପେ ନୁହେଁ, ମର୍ଯ୍ୟାଦା ପୁରୁଷୋତ୍ତମ, ଶାଶ୍ୱତ ଯୁଗାବତାର ରୂପେ ହିଁ ଦେଶକାଳର ଉଦ୍ଧାର ମାର୍ଗ-ସଂକେତ କରନ୍ତି ।

ଏ ଅହଲ୍ୟା-ପୃଥିବୀ ତେଣୁ ଚିରଦିନ ଏକ ପରମ ଅନ୍ୱେଷାରେ ରହିଛି । ବାସନା-ଜଗତର ଅନ୍ଧ-ସଂବେଗରେ ପ୍ରଲୁବ୍ଧ ଇନ୍ଦ୍ରମାନେ ହୁଏତ ତାକୁ ବାରବାର ନିଃଶେଷିତ କରିଦେଉଥିବେ, ଅକରୁଣ ବିଶ୍ୱାସର ପ୍ରଚଣ୍ଡ କ୍ରୋଧ ସଂଘାତ ହୁଏତ ତାକୁ ମୁହୁର୍ମୁହୁ ପ୍ରସ୍ତରୀଭୂତ କରିଦେଉଥିବ, ତଥାପି ଏକ ମଧୁର ପ୍ରେମର କଲ୍ୟାଣମୟ ସ୍ପର୍ଶ ତାର ପ୍ରାଣସତ୍ତାକୁ ଦିନେ ଶାଶ୍ୱତ ପ୍ରାଣବନ୍ତା ସହ ସଂଯୋଗ କରିବ, ସେ ଶୁଭ ସକାଳକୁ ସେ ଅନନ୍ତ ତ୍ରିଯାମା ଧରି ଅତନ୍ଦ୍ର ଅପେକ୍ଷା କରି ରହିଥିବ ।



# ତୀର୍ଥ ଦୂର୍ବାଦଳ

ସୀତା କ'ଣ କରନ୍ତେ ? ସମ୍ମୁଖରେ ସୂର୍ପଣଖା ଆପଣାର ଦାବୀ ଘେନି ତାଙ୍କର ସ୍ଥିତିକୁ ପ୍ରଶ୍ନ କରୁଛି । ସେ ଦାବୀ ପ୍ରେମ ବା ଅପ୍ରେମର ପ୍ରଶ୍ନ ଉଠୁନାହିଁ, ଆପଣାର ଲାଳସାକୁ ଚରିତାର୍ଥ କରିବାର ସେ ପ୍ରମତ୍ତ ଉଗ୍ରତା ଯଥାର୍ଥ କି ନୁହେଁ, ତାର ବିଚାରର ଅବକାଶ ଓ ଅଧିକାର ସୀତାଙ୍କର ନାହିଁ । କେବଳ ସେ ଦେଖୁଛନ୍ତି ସେ ସେଠାରେ ଅଛନ୍ତି । ଉଭା ଅଛନ୍ତି, ଉପସ୍ଥିତ ଅଛନ୍ତି । ଏହା କାହାର ପାଇଁ ଅସହ୍ୟ ପ୍ରଶ୍ନଚିହ୍ନ ହୋଇଉଠିଛି । ଏହା ପୂର୍ବରୁ ସେ ଥିବା ନ ଥିବାରେ କାହାର ଯାଏ ଆସେ ନ ଥିଲା । ଏବେ ଏଇ କ୍ଷଣରୁ ସେ କାହାର ଜଣକ ବିଚାରରେ ଆଉ ନ ରହନ୍ତୁ, ରହିବା କଥା ନୁହେଁ, ଯେମିତି ଗୋଟାଏ କରାଳ ଅଟ୍ଟହାସ ହୋଇ ସେଇ ଦୁର୍ଦମ ଅଭୀପ୍‌ସା ସେଠାରୁ ତାଙ୍କୁ ସଶରୀର ଉଡ଼ାଇ ନେବାକୁ ଝାଞ୍ଜି ପବନ ପରି ଉଦ୍ୟତ ।

ସୀତାଙ୍କର ଅପରାଧ ? ରାମଙ୍କର ସେ ପରିଣୀତା । ସେ ସ୍ତ୍ରୀ ହୋଇ ସାରିଛନ୍ତି ଏପରି ଆଗରୁ ଯେତେବେଳେ ସୂର୍ପଣଖାର ସ୍ଥିତି ବା ଭବିଷ୍ୟତ ସମ୍ଭାବନାର ସଂକେତ ବି ରାମଙ୍କ ଜୀବନରେ ନ ଥିଲା । ଆଉ ସୀତାଙ୍କର ଦ୍ୱିତୀୟ ଅପରାଧ ସ୍ୱାମୀ ରାମ କେବଳ ସୀତାଙ୍କ ପାଖେ ସ୍ୱ-ଅଂଗୀକୃତ ଏକପତ୍ନୀ-ବ୍ରତରେ ବନ୍ଧା ନୁହନ୍ତି, ପ୍ରେମର ସେ ଅଭିରାମ ମୂର୍ତ୍ତି ନିଜ ହୃଦୟ ପାଖେ ପ୍ରୀତିର ପୁଷ୍ପାଞ୍ଜଳିଟିଏ ହୋଇ ସୀତାଙ୍କୁ ନିବେଦିତ ହୋଇ ଯାଇଛନ୍ତି ।

ସୂର୍ପଣଖାର କ୍ରୋଧ ସୀତାଙ୍କ ବାହ୍ୟ ସ୍ଥିତିକୁ ନୁହେଁ, ସ୍ତ୍ରୀତ୍ୱକୁ ନୁହେଁ । ସାମ୍ନାରେ ରହିଥିବାକୁ ନୁହେଁ, ତା କେବଳ ରାମଙ୍କ ହୃଦୟରେ ତାଙ୍କର ପ୍ରେମମୟ ଅବସ୍ଥାନକୁ ।

ରାମଙ୍କ ଭଳି ... ସୁପୁରୁଷଙ୍କ ଜୀବନରେ ନାରୀମାନେ ଆଶ୍ଚର୍ଯ୍ୟ ନୁହନ୍ତି, ପ୍ରଶ୍ନ ନୁହନ୍ତି, ଅବାଂଛିତ ନୁହନ୍ତି । ରାମଙ୍କୁ ଆସ୍ପୃହା କରିବାରେ ତ ରମଣୀ ପ୍ରେମର ବୈଭବ ।

ମାତ୍ର ରାମଙ୍କୁ ଆସ୍ପୃହା କରାଯାଏ ପ୍ରେମରେ ନା ଗ୍ରାସ-ଲାଳସାରେ ? ଲାଳସାର ବଳାତ୍କାର, ଜବର ଦଖଲ ଭୋଗ ଜାହିର, ଶାରୀରିକ ହେଉ ବା ମାନସିକ, ପ୍ରେମ ନା ଧର୍ଷଣ : ହୃଦୟର ଭାଷାକୋଷରେ କାହାର ଭିନ୍ନ ନାମ ?

ନାରୀ ଉପରେ ପୁରୁଷର ବଳାତ୍କାର ସମ୍ପର୍କରେ ବହୁ ବାଦ-ବିସମ୍ବାଦ । ମାତ୍ର ନାରୀଟିଏ ବି ଠିକ୍ ସେଇ ଭାବରେ, ବରଂ ବହୁ ଭୟାନକ ଦୁର୍ଦ୍ଧର୍ଷ ଭାବରେ ପୁରୁଷର ସୁକୁମାର ପ୍ରେମକୁ ମାନସିକ ଧର୍ଷଣରେ ଶ୍ରୀହୀନ ଏବଂ ମର୍ଯ୍ୟାଦାହୀନ କରିଦେଇପାରେ, ସୂର୍ପଣଖାର ପ୍ରମତ୍ତ ଭୋଗଇଚ୍ଛାରେ ତାହା ହିଁ ପ୍ରତିଫଳିତ ।

ପୃଥିବୀରେ ପୁରୁଷମାନଙ୍କୁ ଯେ ବହୁ ରମଣୀ କାମନା କରନ୍ତି, ସେଥିପାଇଁ କ'ଣ ସେମାନେ ଗଣଭୋଗ୍ୟା ହୋଇଯିବେ, ଠିକ୍ ଯେଉଁ ନିୟମରେ ଗଣଭୋଗ୍ୟା ହେବାର ଦୁର୍ଭାଗ୍ୟ ଭୋଗନ୍ତି ପୁରାଣ ଇତିହାସର ବାସବଦତ୍ତା ଆମ୍ରପାଳୀ ପରି ନଗର-ବଧୂଗଣ ?

ସୂର୍ପଣଖା କ'ଣ ସତରେ ରାମଙ୍କୁ ପ୍ରେମ କରିଥିଲା ? ରାମଙ୍କ ପଥକୁ ଫୁଲମଣ୍ଡିତ କରିଥିଲା ? ପରିପାର୍ଶ୍ୱ ସଜାଡ଼ି ଦେଇଥିଲା ? ଆଖପାଖ ସଜାଡ଼ି ଦେଇଥିଲା ? ରାମଙ୍କ ବନଭ୍ରମଣର କ୍ଳାନ୍ତି ଦୂର କରିବାକୁ ଅଞ୍ଚଳ ବଢ଼ାଇ ଦେଇଥିଲା ? ପାଣିତ୍ୱାଳ ସଜାଡ଼ି ଦେଇଥିଲା ? ସୂର୍ପଣଖା କ'ଣ ରାମଙ୍କ ମୁହଁରେ ପ୍ରସନ୍ନତା, ପ୍ରାଣରେ ପରିତୃପ୍ତି, ଚିତ୍ତର ପ୍ରଶାନ୍ତି ଭରିଁଥିଲା ?

ତା ହୋଇଥିଲେ ତ ବାଲ୍ମୀକି ଭଳି କବିଟିଏ ତା ଆଖିର ଲୁହକୁ ମୁକ୍ତାକରି ଗୁନ୍ଥି ଦେଇଥାନ୍ତେ, ଛାତିର ଦରଜକୁ ସଂଗୀତ କରି ବଜାଇ ଦେଇଥାନ୍ତେ । ତାର ସୁକୁମାର ସ୍ୱପ୍ନ ପ୍ରାଣର ଆବେଗମାନଙ୍କୁ କବିତାର ଫୁଲମାଳ ପିନ୍ଧାଇ ଦେଇଥାନ୍ତେ । ବାଲ୍ମୀକି ପରି କବି—ସ୍ରଷ୍ଟାର କରନ୍ତି ନାହିଁ, ବ୍ୟଥିତ ହୁଅନ୍ତି । ଜୀବନର ଦୁଃସ୍ଥତା, ଖର୍ବତା, ବିକଳାଙ୍ଗତା ଓ ନରାଧମତାକୁ ତାଙ୍କ ଭଳି ଆଉ କିଏ ବୁଝିଛି, ସେଭଳି ପାତାଳ ପ୍ରବେଶ ଆଉ କିଏ କରିଛି ଓ ସେ ପାତାଳରୁ ତୃଷାନଳ-ଦଗ୍ଧ ସ୍ୱର୍ଗୀୟ ଅମିୟକୁ କାବ୍ୟ-କଳସୀରେ ରସାମୃତ କରି ପରଶି ଦେବାକୁ ଉଠି ଆସିଛି ?

ସୂର୍ପଣଖା କ'ଣ ସତରେ ରାମଙ୍କୁ ପ୍ରେମ କରିଥିଲା ? ତା'ହେଲେ ସୀତାଙ୍କ ହୃଦୟରେ ସେଇ ନାରୀ ପ୍ରେମର ନିଷ୍ଠା ଅନୁରାଗକୁ ଲକ୍ଷ୍ୟକରି ସେ କାହିଁକି

ସୀତାଙ୍କୁ ଅପରାଧିନୀ ବରୁଥିଲା ? ରାମଙ୍କ ପ୍ରତି ସୂର୍ପଣଖାର ରତି ବାସନାକୁ ଜାଣିବାମାତ୍ରେ ସୀତା କଣ ଆତ୍ମଘାତିନୀ ହୋଇଥାନ୍ତେ ?

ଘନ ଅରଣ୍ୟରେ ଲୁଚି ଯାଇଥାନ୍ତେ ? ସୂର୍ପଣଖାର ସଂଭୋଗ ଇଚ୍ଛା ଚରିତାର୍ଥ କରିବାକୁ ରାମଙ୍କୁ ବାଧ୍ୟ କରିଥାନ୍ତେ ? ନା ନିଜ ହୃଦୟରୁ ରାମଙ୍କ ପ୍ରେମକୁ ଓ ରାମଙ୍କ ସହ ତାଙ୍କର ସଂବନ୍ଧକୁ ନାସ୍ତି ଘୋଷଣା କରିଦେଇଥାନ୍ତେ ? ତାର ହୃଦୟଜାତ ଅଭିଳାଷ ଓ ତଜ୍ଜନିତ ଈର୍ଷା ତାର ନିଃଜସ୍ୱ ସମସ୍ୟା; ମାତ୍ର ପୃଥିବୀରେ ସୀତା—ପ୍ରେମର ଭାଗ୍ୟ କାହିଁକି ଚିରଦିନ ଈର୍ଷା—ନିପୀଡ଼ିତ ? ଆତ୍ମସାତ କରିବାର ଉଦଗ୍ର ବାହୁ ବଳୟରେ ସବୁ କୋମଳ ତୃଣାୟୁ ଭାଗ୍ୟ କଣ୍ଟାଗତ ?

ରାମଙ୍କର କ୍ରୋଧ ଓ ଶାସ୍ତି ସୂର୍ପଣଖାର ଅଭିଳାଷ ପ୍ରତି ନ ଥିଲା । ମଣିଷର ଇଚ୍ଛା, ଆବେଗ ଅଭିଳାଷକୁ ଭ୍ରୂକୁଞ୍ଚନ କରିବା ଭଳି ଏକ ଅଣ— ଈଶ୍ୱରୀୟ କ୍ଷମାହୀନ ବ୍ୟକ୍ତିତ୍ୱ ରାମଙ୍କଠାରେ କଳ୍ପନା କରାଯାଇପାରେନା । ମଣିଷ ଅପୂର୍ଣ୍ଣ ଅକ୍ଷମ ବୋଲି ତ ତାର ଅପରିତୃପ୍ତ ବାସନା ଏତେ ଉଦଗ୍ର; ତାର ଅଶାନ୍ତ କ୍ଷୋଭ ଏତେ ସ୍ପୃଶକାତର ଶ୍ରଦ୍ଧା ଅନୁରାଗର ଇତିହାସରେ କୃଷ୍ଣ, ବୁଦ୍ଧ, ଯୀଶୁ ପ୍ରଭୃତି ପୁରୁଷୋତ୍ତମମାନେ କୁବୁଜା, ଆମ୍ରପାଲୀ, ମେରି ମାଗଦୁଲିନଙ୍କୁ ହତାଦର କରିନାହାନ୍ତି । ଅନୁରାଗର ପୁଷ୍ପାଞ୍ଜଳିକୁ ପ୍ରତ୍ୟାଖ୍ୟାନ କରିନାହାନ୍ତି । ମାତ୍ର ସେହି ପ୍ରଚୁର ଇଚ୍ଛାମତି ପ୍ରମଦାକୁଳ କୃଷ୍ଣ ବୁଦ୍ଧ ଯୀଶୁଙ୍କୁ ରତି-ଇଚ୍ଛାର ଉଦଗ୍ରତାରେ ଆତ୍ମସାତ୍ କରିବାକୁ ସୂର୍ପଣଖା ଭଳି ମାଡ଼ି ଆସି ନ ଥିଲେ ।

ସୂର୍ପଣଖାମାନେ କେବଳ ମାଡ଼ି ହିଁ ଆସନ୍ତି । ସୀତାଙ୍କୁ ଉତ୍କ୍ରାନ୍ତ କରିବା ଭିନ୍ନ ରାମଙ୍କ ପ୍ରତି ପ୍ରେମର ଅନ୍ୟରୂପ ଜାଣନ୍ତି ନାହିଁ । ସେଇଥିପାଇଁ ବୋଧହୁଏ ରକ୍ତସ୍ନାତ ହେବାର ଦୁର୍ଦ୍ଦଶାକୁ ଅନିବାର୍ଯ୍ୟତଃ ଭୋଗନ୍ତି ।

ଲକ୍ଷ୍ମଣଙ୍କ ଅସ୍ୱାଘାତ ସୂର୍ପଣଖାର ଅନୁରାଗକୁ ନୁହେଁ, ବହୁ ଅନୁରାଗ-ବତୀଙ୍କୁ ରାମଙ୍କ ପାଖେ ସନ୍ତୁଷ୍ଟ ଗୃହକର୍ମୀ ରୂପେ ସେ ଭେଟିଥିବେ । ତାଙ୍କର ଆଘାତ ସୂର୍ପଣଖାର ସୀତାଙ୍କ ପ୍ରତି ଅଶାଳୀନ ଅସହିଷ୍ଣୁ କ୍ରୋଧକୁ ।

ଶ୍ରୀରାମ ପ୍ରେମମୟ; ତାଙ୍କ ପ୍ରତି କେହି ପ୍ରେମାନୁରାଗିଣୀ ହେଲେ ଲକ୍ଷ୍ମଣଙ୍କର ସେତ ବନ୍ଦନୀୟା ହୋଇଯିବେ । ମାତ୍ର ସେହି ପ୍ରେମ-ସ୍ୱରୂପଙ୍କୁ କେହି

ସ୍ଥୂଳ କାମାତୁରତାରେ ଭୋଗ-ବିକୃତ କରିଦେବାକୁ ବସିଲେ ଶୁଦ୍ଧ ବିଗ୍ରହର ଆଜ୍ଞାବଦ୍ଧ ଲକ୍ଷ୍ମଣ-ଚେତନା ଅବଶ୍ୟ ପ୍ରତିଘାତ କରିଦେବ ।

ଲକ୍ଷ୍ମଣ ବିଗ୍ରହର ଶୁଦ୍ଧ ମାର୍ଗରେ ପ୍ରେମର ମର୍ଯ୍ୟାଦାପଥ ରଚନା କରୁଥିବା ପ୍ରତୀକ-ସତ୍ତା । ଉନ୍ନିଦ୍ର ରହି, ପ୍ରାଣପାତ କରି ସେ ପ୍ରେମର ଶୁଦ୍ଧତାକୁ ରକ୍ଷା କରନ୍ତି । ପ୍ରେମର ମର୍ଯ୍ୟାଦାଗାରକୁ ସାମାନ୍ୟତଃ ବି କେହି ଉଲ୍ଲଙ୍ଘନ କରିବା ସେ ସହିପାରନ୍ତିନାହିଁ । ତାଙ୍କ ନିକଟରେ ସୂର୍ପଣଖାର ରାମ-କାମନା ନୁହେଁ, ଅନ୍ୟର ପ୍ରେମ-ବଳୟକୁ ଅନଧିକାର ବଳ-ପ୍ରବେଶ ହିଁ ଅପରାଧମାଙ୍ଗୁ ବିବେଚିତ ହୋଇଥିବା ବ୍ୟକ୍ତି-ବିଶେଷ ରୂପେ ନୁହେଁ, ମାନସିକ ବିବର୍ତ୍ତନର ବିଶେଷ ସତ୍ତ୍ୱସ୍ତର ରୂପେ ହିଁ ଲକ୍ଷ୍ମଣଙ୍କ କ୍ରିୟା ସମର୍ଥିତ । ଯାହା ପ୍ରେମକୁ ଅସୁନ୍ଦର ଅମର୍ଯାଦାକର, ବିକୃତ କରିବାକୁ ଆସ୍‌ଫାଳନ କରେ ଯାହାର ଔଦ୍ଧତ୍ୟ ପ୍ରେମ ପାଖେ ଭ୍ରଷ୍ଟ ହୋଇଯାଏ, ତାହା ହିଁ ସେ ଛେଦନ କରନ୍ତି । *

ଦେବତାଙ୍କ ନୈବେଦ୍ୟ—ଯୋଗ୍ୟ ଯେଉଁ ପ୍ରେମ, ତା ଭୋଗଥାଳିରେ ବଢ଼ାଯାଏ, ଉଚ୍ଛିଷ୍ଟ ପାତ୍ରରେ ନୁହେଁ, ସେ ନୈବେଦ୍ୟ ଅଇଁଠା ବରକୋଳି ହେଉପଛେ, ଉଚ୍ଛିଷ୍ଟ ଆମିଷାନ୍ନଯୁକ୍ତ ସୁରାବଶେଷ ନୁହେଁ ।

ସୂର୍ପଣଖା ରାମଙ୍କୁ ମୁହୂର୍ତ୍ତେ ପ୍ରେମ କରିଥିଲେ ତ ଶବରୀ ହୋଇଯାଇ-ଥାନ୍ତା । ଅହଲ୍ୟା ହୋଇଯାଇଥାନ୍ତା । ଅବଶ୍ୟ ସେ ଶବରୀ ବା ଅହଲ୍ୟା ହେବା ଅପରିହାର୍ଯ ନ ଥିଲା । ଯଥାର୍ଥ ପ୍ରେମର ଉଦ୍‌ବୋଧନଟିକୁ ନିଜ ଭିତରେ କାଣିଚାଏ ସ୍ଥାନ ଦେଇଥିଲେ ସୂର୍ପଣଖା ଜୀବନରେ ବି ପ୍ରେମର ମହତ୍ତମ ବିଭବଟିଏ ଫୁଟି ଉଠିଥାନ୍ତା । ସୂର୍ପଣଖା ହୋଇ ମଧ୍ୟ ରହିନଥାନ୍ତା । ତାର ଆସୁରିକ ଶରଂସା କେବଳ ଦୁର୍ମଦ ବଳାତ୍କାର ନୁହେଁ, ସମାଦରର ସାମର୍ଥ୍ୟ ହୋଇ ମହାମହିମାରେ ଉଭା ହୋଇଥାନ୍ତା ।

---

* ବୈଜ୍ଞାନିକମାନଙ୍କ ମତରେ— ନାକ ଓ କାନର ସ୍ପର୍ଶବାହୀ ସ୍ନାୟୁମାନେ ସବୁଠାରୁ ଅଧିକ ସଂବେଦନଶୀଳ ଓ ସନ୍ତର୍ପଣ, ସଜାଗ ଏବଂ ରତିଇଚ୍ଛାର କ୍ରିୟାଶୀଳତା (erotic impulse) ସେମାନଙ୍କଠାରେ ସର୍ବାଧିକ । ଏଇ ଦୃଷ୍ଟିରୁ ଲକ୍ଷ୍ମଣଙ୍କ ଦ୍ୱାରା ସୂର୍ପଣଖାର ନାକ-କାନ ରୂପୀ ଯୌନ ପ୍ରତୀକ ଛେଦନ ମନସ୍ତତ୍ତ୍ୱ ବିଗ୍ରହର ଅପେକ୍ଷା ରଖେ ।

ସୂର୍ପଣଖା ସତରେ ରାମଙ୍କୁ ପ୍ରେମ କରିଥିଲା ? ତାହେଲେ ତ ସେ ବୁଝିଥାନ୍ତା ରାମଙ୍କ ମୁହଁର ହସ ହେଉଛନ୍ତି ସୀତା, ରାମଙ୍କ ଆଖିର ତାରା ହେଉଛନ୍ତି ସୀତା ।

ଆଉ ସୀତା ରାମଙ୍କର ଛାୟାମାତ୍ର ନ ଥିଲେ ଯେ କେହି ଆପଣାର ଅନ୍ଧକାରରେ ରାମଙ୍କ ଚକ୍ଷୁଃସୀମା ଆଚ୍ଛାଦିତ କରିଦେଲେ ସେ ଅପସାରିତ ହୋଇଯିବେ । ବ୍ୟକ୍ତି ଅପରବ୍ୟକ୍ତିର ଅନ୍ତଃସ୍ପର୍ଶ କରିନଥିବା ପର୍ଯ୍ୟନ୍ତ ସେ ଯେଉଁ ସ୍ଥିତିରେ ଥିଲେ ବି ବହିଃସ୍ଥ । ସେତେବେଳେ ପ୍ରତ୍ୟେକ ପ୍ରତ୍ୟେକଙ୍କ ପାଇଁ ଛାୟାଟିଏ ହୋଇରହିଥାନ୍ତି । ମାତ୍ର ସୀତା ରାମଙ୍କ ହୃଦୟର ସେଭଳି ଆଲୋକ-ଉତ୍ସଟିଏ ଥିଲେ ଯାହାର ଆଭାରେ ରାମ ନିଜ ଚେତନାର ହରିବଲୟକୁ ଉଦ୍‌ଭାସିତ ଦେଖୁଥିଲେ, ସବୁ ଛଳନା ଓ ମାୟାବୀ ଆୟୋଜନକୁ ସଙ୍ଗେ ସଙ୍ଗେ ବୁଝି ନେଉଥିଲେ ।

ସୂର୍ପଣଖାର ହୃଦୟରେ ରାମଙ୍କ ପ୍ରତି ଯଥାର୍ଥ ପ୍ରେମର କଣାଟିଏ ଥିଲେ ସୀତାଙ୍କ ହୃଦୟସ୍ଥ ପ୍ରେମ ତାକୁ ସ୍ୱୟଂ ରାମଙ୍କ ଅଭ୍ୟନ୍ତର ପର୍ଯ୍ୟନ୍ତ ନିଜ ଆସନ ପାଖକୁ ଟାଣି ଆଣିଥାନ୍ତା । ପ୍ରେମର ସତ୍ୟ ଯଦି ରାମ-ସୀତାଙ୍କ ସଂପର୍କରେ ଅବଧାରିତ ଓ ସୁମହିମାମଣ୍ଡିତ, ତେବେ କୌଣସି ପ୍ରେମ ସଂପର୍କରେ ବିଡ଼ମ୍ବନା ସେ ରାଜ୍ୟରେ ଅସଂଭବ ଓ ଅସତ୍ୟ । ଅବଶ୍ୟ ସେ ରାମ-ସୀତା ଯଦି ସାଧାରଣ ମଣିଷ ଅଥବା ପ୍ରେମ ଭାଗ୍ୟ ପାଖେ ବନ୍ଧା ପଡ଼ିଥାନ୍ତି, ତା ଭିନ୍ନ କଥା ।

ପ୍ରଣୟୀଯୁଗଳ ଯଦି ପରସ୍ପରର ଛାୟାମାତ୍ର ହୋଇଥାନ୍ତି, ତେବେ ସେମାନେ ଅନ୍ଧାରର ପ୍ରବେଶ ମାତ୍ରେ ପରସ୍ପରକୁ ନିଜ ଭିତରୁ ହରାଇ ବସିବେ, ଅନ୍ଧାର ନିକଟରେ ଆତ୍ମ ସମର୍ପଣ କରିଦେବେ ।

ମାତ୍ର ସେମାନେ ଯଦି ଏକ ଅପରର ଅନ୍ତରର ଜ୍ୟୋତି ହୋଇଥାନ୍ତି, ସେମାନଙ୍କ ହୃଦୟରେ ପରସ୍ପର ପ୍ରତି ଅନୁରାଗ ଦୀପ ହୋଇ ଜଳୁଥାଏ, ତା ହେଲେ ସେ ଦୀପର ଆଲୁଅରେ ବାହାରର ସବୁ ଅନ୍ଧାର ସ୍ୱତଃ ଅନ୍ତର୍ହିତ ହୋଇଯିବ ।

ରାମଙ୍କୁ ସୂର୍ପଣଖା ଯଦି ସତରେ ମୁହୂର୍ତ୍ତେ ପ୍ରେମ କରିଥାଏ ତ ଜନ୍ମ ଜନ୍ମାନ୍ତରରେ ବି ସେ ମନସିଦ୍ଧା ହେବାର ପ୍ରତିଶ୍ରୁତି ପାଇଯାଇଥିବ । ହୃଦୟ ଯେଉଁଠି ପ୍ରୀତିର ଆକର୍ଷଣରେ ଆକର୍ଷିତ ହୋଇ ସେ ଆକର୍ଷଣ

ଶକ୍ତି ନିକଟରେ ନିଜର ପ୍ରାଣ, ଅହଂ ଓ ସବଳତାକୁ ସମର୍ପିଦିଏ, ସେଇ ସମର୍ପଣ ହିଁ ପ୍ରେମର ଆରାଧନାରେ ରୂପାନ୍ତରିତ ହୋଇଯାଏ । ସେ ପ୍ରେମରେ ହାସ ନାହିଁ କି ଗ୍ରାସ ନାହିଁ । ମାତ୍ର ସୂର୍ପଣଖା ସେ ପ୍ରେମର ପୂର୍ଣ୍ଣିମାଶଶୀଙ୍କୁ ତାର ଆସୁରୀ ମାୟାରେ ରାହୁ-ଗ୍ରାସ କରି ବସିବାବେଳେ ହୁଏତ ଭୁଲିଗଲା ଯେ ଗ୍ରସ୍ତ ଚନ୍ଦ୍ରର ଜ୍ୟୋତ୍ସ୍ନା ବି ଲିଭିଯାଏ; ରାହୁର ଅମୃତ-ଲୋଭ ଯୁଗେ ଯୁଗେ ମୃତ୍ୟୁ-ନୀଳ ବିଷ ହୋଇଯାଏ । ରାହୁ ପ୍ରେମର ଏକମାତ୍ର ପରିଣତି ରାହୁ-ରୋଷ । କାରଣ ସେ ପ୍ରେମ ଉତ୍ତରଣର ମାର୍ଗ ପାଏ ନାହିଁ । ପାଏ ନାହିଁ ବୋଲି ରସାତଳକୁ ଏକମାତ୍ର ବାଟ ଜାଣିଥାଏ ।

ନିଜର ପ୍ରୟୋଜନ କଣ ଅନ୍ୟର ପ୍ରୟୋଜନକୁ, ନିଜର ଅଧିକାର-ଲାଳସା ଅନ୍ୟର ନ୍ୟାଯ୍ୟକୁ ନାସ୍ତି କରିଦେଇପାରେ ? ସୂର୍ପଣଖା ରାମଙ୍କୁ କିପରି କାମନା କରେ, ରାମ ତାର ପ୍ରତ୍ୟୁତ୍ତର କିପରି କରିବେ, ତାଙ୍କ ଭଳି ବାଞ୍ଛା-କଳ୍ପତରୁ କାହାର କେଉଁ ମନୋକାମନା କିପରି ପୂରଣ କରିବେ, ସେଥିରେ ସୀତାଙ୍କର କର୍ତ୍ତୃ-ଭୂମିକା ନ ଥାଏ । ରାମ ତାଙ୍କ ଅନୁମତିକ୍ରମେ ଈଶ୍ୱର ହୋଇ ନାହାନ୍ତି । ତାଙ୍କର ଅନ୍ତର୍ଯାମିତ୍ୱ, ଭାବଗ୍ରାହିତ୍ୱ ସୀତାଙ୍କ ସହ ତାଙ୍କର ପରିଣୟ ସଂବନ୍ଧ ସହ ସଂପୃକ୍ତ ନୁହେଁ । ତାଙ୍କ ଐଶ୍ୱରିକ ଅନୁଗ୍ରହ ସଂପର୍କରେ ସୀତା ତାଙ୍କୁ ବଚନବଦ୍ଧ କରିପାରିବେ ନାହିଁ । ରାମ ସୀତାଙ୍କ ପାଖେ ଯଦି ବଚନବଦ୍ଧ, ଯେଉଁଥିପାଇଁ ବଚନବଦ୍ଧ, ସେଥିରେ ନିଜକୁ ସେ ସ୍ୱତଃ ଅଙ୍ଗୀକୃତ କରିଛନ୍ତି, ସୀତାଙ୍କର ସବୁ ସଂବନ୍ଧର ଭବିଷ୍ୟତ ମଧ୍ୟ ସେଥିରେ ଅଙ୍ଗୀକୃତ ହୋଇଯାଇଛି ।

ସୂର୍ଯ୍ୟାଗ୍ନି ଯେତେବେଳେ କମନୀୟ ଦୀପଶିଖାଟିରେ ଆବଦ୍ଧ ରହି କବିତା କରିବାକୁ ଚାହାନ୍ତି, ସେତେବେଳେ ଦୀପଶିଖାଟିର ସାମର୍ଥ୍ୟ ପାଖେ ଧରାଦିଅନ୍ତି । ସେ ଶିଖାକୁ କେହି ଘୃତାହୁତିରେ ଅଧିକ ପ୍ରଜ୍ଜ୍ୱଳିତ କରିପାରେ । ମାତ୍ର ସଳିତାକୁ ବାଦ୍ ଦେବାକୁ ବସିଲେ ନିଆଁ ଜଳି ପାରିବନାହିଁ ।

ରାମ କାହା ପାଖେ କିପରି ଧରାଦେବେ ତାହା ତାଙ୍କର ସଂପୂର୍ଣ୍ଣ ଅନ୍ତର୍ଗତ ବ୍ୟାପାର । ସତ୍ତ୍ୱର ସ୍ୱାଧୀନ ନିର୍ଣ୍ଣୟ । ସେଠି ସୀତା ନ ଥାନ୍ତି, ପତ୍ନୀ ନଥାନ୍ତି, ଅଧିକାର ସଂବନ୍ଧ ନ ଥାଏ । ସଂବନ୍ଧିତ ଅଧିକାର ପୂର୍ବରୁ ହିଁ ତିଆରି ହୁଏ । ମାତ୍ର ଅଧିକାରର ସଳିତା ଭିତରେ, ଯେଉଁ ସଂପର୍କ ଅଗ୍ନିଶିଖା ହୋଇ ଜଳିପାରେ, ଆଲୋକ ବିତରିବା ତାହାର ସାଧ ।

ପ୍ରେମର ନାଁରେ ସୂର୍ପଣଖା ନିଜକୁ ଜାଳି ହୁଏତ ଶୁଦ୍ଧ ତପସ୍ୱିନୀ ହୋଇଥାନ୍ତା କିମ୍ବା ବାସନାନଳ ରୂପେ ଅପରର ସୁଖଶାନ୍ତିର ଭାଗ୍ୟକୁ ଜଳାଇ ନିଜ ଇହପର ଦଗ୍ଧ କରିଦେଲା, ସେଥିରେ ସୀତାଙ୍କର କିଛି ଭୂମିକା ନାହିଁ।

ସୀତା ରାମଙ୍କୁ ପାପ-ଶପଥ କରାଇବାବେଳେ ହୁଏତ ସୀତାଙ୍କର ଏଇପରି ସୂର୍ପଣଖାମାନଙ୍କ ଭୟ ଈର୍ଷା ଓ ଅଧିକାର-ଅହଂକାର ଥିଲା । ମାତ୍ର ରାମ ଯଦି ନିଜକୁ ଜାଣିଥିଲେ, ନିଜ ପତ୍ନୀ ପ୍ରେମର ନିଷ୍ଠାରେ ନିଃସନ୍ଦେହ ଥିଲେ, ଏକ ପତ୍ନୀବ୍ରତ ଶପଥରେ ନିଜକୁ କାହିଁକି ବାନ୍ଧିଲେ ? ଶବ୍ଦମୟ ବାକ୍ୟରେ ବନ୍ଧନକୁ ଜାଣି ଜାଣି ଖୋଜିଲେ ? ଭବିଷ୍ୟତରେ ଏପରି ଦୁଃସ୍ଥିତିମାନଙ୍କରେ ଆତ୍ମରକ୍ଷା ପାଇଁ ?

ଈଶ୍ୱର କ'ଣ ପୃଥିବୀର ବନ୍ଧନକୁ ପୃଥିବୀର ଜୀବନ ପାଇଁ ଅପରିହାର୍ଯ୍ୟ ମଣନ୍ତି ?

ରାମଙ୍କ କ୍ରୋଧ ସୂର୍ପଣଖାର ଇଚ୍ଛାଭିଳାଷ ପ୍ରତି ହୁଏତ ନ ଥିଲା । ସେ ତାକୁ ଗ୍ରାହ୍ୟ କରିଥାନ୍ତୁ ବା ନ ଥାନ୍ତୁ, ଶାସ୍ତିଯୋଗ୍ୟ ବିବେଚନା କରିଥିବେ । ରତି ଯେ ପ୍ରୀତିର ଆଦ୍ୟ ଉଦ୍‌ବୋଧନ, ଆରତି ରୂପେ ତାର ଶେଷ ଓ ଶ୍ରେଷ୍ଠ ରୂପ ପରିଣତି, ତାହା ତାଙ୍କୁ ଅଜଣା ନ ଥିବ । ମାତ୍ର ସୂର୍ପଣଖାର କ୍ରୋଧ, ଈର୍ଷା, ଦ୍ୱେଷ ଏ ସବୁ କେଉଁ ପ୍ରେମର ନୈବେଦ୍ୟ ?

ସବୁ ମଣିଷ ଭିତରେ ଏକ ସୂର୍ପଣଖା ରହିଛି, କିଛି ଅଂଶରେ ବି ହେଉ, ଆମେ ଆମ ସୂର୍ପଣଖାଭିକୁ ଜାବୁଡ଼ି ଧରିଥିବାଯାଏ କେବଳ ପ୍ରେମର ନାକ କାନ କାଟୁଥିବୁ । ଆଉ ଆମ ଅନ୍ତରସ୍ଥ ପ୍ରେମରୂପୀ ରାମଚନ୍ଦ୍ରଙ୍କୁ ଦୁଃଖ ସନ୍ତାପର ସମୁଦ୍ର ପହଁରାଉଥିବୁ । ସୀତାରୂପୀ ଅନ୍ତଃସତ୍ତ୍ୱ ପାଇଁ କାଳ କାଳ ଅଗ୍ନି ପରୀକ୍ଷାର ଜ୍ୱଳନ୍ତମୟ ମୁହୂର୍ତ୍ତମାନ ତିଆରି କରୁଥିବୁ । ଅନ୍ଧ ବାସନା କବଳିତ ଆମର ନପାରିଲା ପଣ ଆମର କ୍ଷୋଭ ଆକ୍ରୋଶ ହୋଇ ଆମ ପ୍ରାଣ-ପଞ୍ଚବଟୀକୁ କ୍ଷତବିକ୍ଷତ କରିଦେଉଥିବ ?

ସୂର୍ପଣଖା ଓ ରାବଣ, ରାମ ଓ ସୀତା ଆମ ପ୍ରତ୍ୟେକଙ୍କ ଭିତରେ ଜାଗ୍ରତ ଅଛନ୍ତି । ସବୁ କିଛି ଆତ୍ମସାତ୍ କରିନେବାର ଆମର ସର୍ବଗ୍ରାସୀ ଉଦଗ୍ର ବାସନା ଲୋଭ ସୂର୍ପଣଖା । ପ୍ରଥମେ ଛଦ୍ମରୂପରେ ବହୁ ଛଳନାମୟ ଲୀଳା-ବିଳାସ ରଚନା କରି, ଓଠରେ ନାରଙ୍ଗୀ ହସ ମାଖି, କଥାରେ ଚଟୁଳ ଗୁଞ୍ଜରି

ଭରି, କଣ୍ଠରେ କୋମଳ ଦରଦ ଫୁଟାଇ ଓ ଦୃଷ୍ଟିରେ ଉଷ୍ମ ଲାଳସା ଭରି ଧୀର ଲଳିତ ଛନ୍ଦରେ ଉଭା ହୁଏ । ଆଉ ଯଦି ବାସନା ଚରିତାର୍ଥର ଅବକାଶ ନ ପାଏ—କ୍ରୋଧ, ଈର୍ଷା ଆକ୍ରୋଶରେ କରାଳ ରାକ୍ଷସୀ ରୂପରେ ବଦଳି ଯିବାକୁ ସମୟ ନିଏନାହିଁ । ତା'ପରେ ଆମ ଭିତରେ ରାବଣର ଅହଂକାର ଫଟେଇ ରବ, ରଥର ଘର୍ଘର ନାଦ, ସୀତା ବିଳାପ ଓ ରାମଙ୍କ ସନ୍ତାପ ସବୁ ଆମେ ଶୁଣୁ ।

ପୃଥିବୀରେ ସବୁବେଳେ ପ୍ରେମ ଉପରେ ସୂର୍ପଣଖା ରାବଣମାନଙ୍କ ଆଖି ପଡ଼େ । ତା ଭାଗ୍ୟରେ ଦୈବାତ୍ ମିଥିଳା ନଗରୀକୁ ବାଟ ଫିଟେ । ଦୈବାତ୍ ହିଁ ରାମ-ସୀତାଙ୍କର ମଧୁଚନ୍ଦ୍ରିକା ଘଟିଥାଏ । ସେଗୁଡ଼ିକ ପୃଥିବୀର ବିରଳ ଭାଗ୍ୟ ।

ଭଲ ପାଇବା ତ ସମସ୍ତଙ୍କ ଭିତରେ ସଂଗୀତ ହୋଇ ବାଜୁଥାଏ । ମାତ୍ର ସେ ସଂଗୀତର ସ୍ୱରମୂର୍ଚ୍ଛନା ସବୁ ବାଦ୍ୟଯନ୍ତ୍ରରେ ସମସ୍ତଙ୍କ ହାତରେ ଇଚ୍ଛାମାତ୍ରେ ଧରାଦିଏନାହିଁ । ସାଧନା, ନିଷ୍ଠା ଓ ସାମର୍ଥ୍ୟ ହିଁ ସଂଗୀତର ଯାହା ଭଲଲାଗେ ତାକୁ କରାୟତ୍ତ କରିବାରେ ସେ ଭଲ ପାଇବାର ସାର୍ଥକତା ଖୋଜାଯାଇ ନ ପାରେ । ଭଲ ପାଇବାର ଆବେଗ ସହ ନିଜକୁ ଢାଳି ଦେବାର ବ୍ୟାକୁଳତାଟି ସମତାନିକ ନ ହେଲେ ପ୍ରେମର ସଂଗୀତରେ ବି ଛନ୍ଦ ଆସେନାହିଁ ।

ଘୋରି କ୍ଷୟି ହୋଇସାରିବା ପରେ ଚନ୍ଦନ ପ୍ରେମର ମିଳମଣି ପ୍ରତିମାଙ୍କ ଅଙ୍ଗଲାଗି ହୁଏ । ପୋଡ଼ି ହେବାପରେ ହିଁ ଭସ୍ମପ୍ରିୟ ଯୋଗୀର ଅଂଗସାଜ ବିଭୂତି ହେବାର ଭାଗ୍ୟ ପାଏ ।

ପୃଥିବୀର ପ୍ରେମର ଭାଗ୍ୟ ଫୁଲ ଭଳି, ସମୁଦ୍ର ଭଳି, ଆକାଶ ଭଳି; ସବୁଠୁ ସ୍ପର୍ଶକାତର ଓ ସଂବେଦନଶୀଳ ଏଇ ପ୍ରେମ । ଫୁଲକୁ ଛିଡ଼ାଇ ଆଣି ହାତମୁଠାରେ ଗୁପିଦେଲେ ସେ ଫୁଲ ଝାଉଁଳିଯାଏ (ଗଛ ମଉଳାଠୁ ସେ ଝାଉଁଳା ବଡ଼ କରୁଣ ଓ ଶ୍ରୀହୀନ) । ଆଉ ସମୁଦ୍ର ଭିତରକୁ ଝାସଦେଲେ ବୁଡ଼ି ମରିବାକୁ ହୁଏ କି ଆକାଶକୁ ହାତ ଟେକିଦେଲେ ନିରାଲମ୍ବ ଶୂନ୍ୟତାକୁ ମଥାରେ ମୁଣ୍ଡାଇ ବଞ୍ଚିବାକୁ ପଡ଼େ । ସୂର୍ପଣଖାମାନେ ପ୍ରେମର ଫୁଲକୁ ଛିଡ଼ାନ୍ତି, ଦଳନ୍ତି । ମାତ୍ର ରାମ ପ୍ରେମ ସ୍ୱୟଂ ଫୁଲ, ସମୁଦ୍ର, ଆକାଶ, ତାହା ଅବାରିତ । ସେଥିରେ ବୁଡ଼ି ମରିବାକୁ ଓ ଉଡ଼ି ହଜିବାକୁ ଯିଏ ପ୍ରସ୍ତୁତ, ସେ ଭଲ

ପାଇବାର ଆତ୍ମମୁଗ୍ଧ ସଂଗୀତ ଗାନ କରିବ; ସୀତା ହରଣରେ ନିଷ୍ଠୁର ଚକ୍ରାନ୍ତ କରିବ ନାହିଁ ।

ବ୍ୟକ୍ତିର କାମନା ବାସନା ସବୁବେଳେ ଚରିତାର୍ଥ ହେବ, ସଂସାରରେ ତାହା ଘଟିପାରେ ନାହିଁ । ଯିଏ ଯାହା ଯେତେବେଳେ ଯେମିତି ଚାହେଁ, ସିଏ ତା ପାଇବାକୁ ହକ୍‌ଦାର, ପୃଥିବୀରେ ଏ ନିୟମ କାହାରି ପାଇଁ ବି ନୁହେଁ, ଅବତାରୀ—ସନ୍ତମାନଙ୍କ ପାଇଁ ବି । ସେଇ ଭଗ୍ନ ଆଶାର ପରିଣତି କିନ୍ତୁ ଦୁଇ ପ୍ରକାରେ ପ୍ରକଟିତ ହୁଏ ଓ ସେଥିରେ ବ୍ୟକ୍ତିର ପୌରୁଷର ନିର୍ଣ୍ଣୟକାରୀ ଭୂମିକାଟି ସ୍ୱୀକୃତ ପାଏ । ସେ ବାସନାକୁ ଉତ୍ସର୍ଜିତ କରିବ ଓ ଉନ୍ନତ ହୋଇଯିବ ଅଥବା ବାସନା- ଅଧିଚିତ ପଙ୍କ ପାଣିରେ ସଢ଼ିବ । ପୁରୁଷକାରର ତାହା ହିଁ ପରୀକ୍ଷା । ସେ ପରୀକ୍ଷା ଏକାଧାରରେ ବ୍ୟକ୍ତିଗତ ପୁଣି ସମଗ୍ର ପୃଥିବୀର ।

ଯଦି କଥା ଉଠେ ଯେ ସୂର୍ପଣଖା ମଣିଷ ନୁହେଁ ବୋଲି ମଣିଷର ପରୀକ୍ଷା ଦେବାକୁ ସେ ବାଧ୍ୟ ନୁହେଁ, ମଣିଷର ପୃଥିବୀ ସହ ଜଡ଼ିତ ହେବାକୁ ସେ ଆସିବ କାହିଁକି ? ଆଉ ଆସିଲେ ତ ଆସୁରିକ ଭାବର ପରିଣତି ଭୋଗିବା ହେଉଛି ବିଧାନ । ପୃଥିବୀରେ ଦ୍ରବ୍ୟ ଅଦ୍ରବ୍ୟ ସବୁ ମଣିଷର କଷଟିରେ ମପା ହୁଅନ୍ତି । ପୃଥିବୀ ଯେ କର୍ମ କର୍ମଫଳ ବାଜି, ଅଯୋଗ୍ୟ ରଖିହୁଏ ନାହିଁ । ଯାହା ପ୍ରଚଣ୍ଡ ଶକ୍ତି ଓ ଦୁର୍ମଦ ଅହଂକାରରେ ବଳପୂର୍ବକ ଅନ୍ୟସ୍ୱ ଅପହରଣ କରିବ, ସେ ଆସୁରିକତାକୁ ଭାଙ୍ଗି ଦେବାକୁ ତ ପୃଥିବୀ ନାମକ ଗ୍ରହର ସୃଷ୍ଟି । ସ୍ୱର୍ଗ, ପାତାଳର ଦେବାସୁରଙ୍କ ଜଗତ ସଙ୍ଗେ ତାର ବା କ ପ୍ରତ୍ୟକ୍ଷ ସଂବନ୍ଧ ? ପୃଥିବୀର ସୃଷ୍ଟି ମୂଳରେ ମନେହୁଏ ଲକ୍ଷ୍ୟ ଗୋଟିଏ; ସତ୍ତ୍ୱର ଉଦ୍‌ବର୍ତ୍ତନ । ସେ ଦୁର୍ବଳ କ୍ଷୀଣ ହୋଇ ମିଳାଇ ଯିବନାହିଁ କିଂବା ସ୍ପର୍ଦ୍ଧିତ ଅହଂକାରରେ ବିସ୍ଫୋରିତ ହୋଇଯିବ ନାହିଁ ।

ପୃଥିବୀ ସ୍ୱର୍ଗଭଳି ଭୋଗଭାଗ୍ୟଭରା ନୁହେଁ, ଦାନବପୁରୀ ଭଳି ଭୋଗ ସର୍ବସ୍ୱ ଜୀବନ ମଧ୍ୟ ବଞ୍ଚେନାହିଁ । ଏଠି ତେଣୁ ଦେବତା ତ ଦାନବ, ଯିଏ ବି ହେଉ, ତାକୁ ମଣିଷମାନଙ୍କ ଜଗତରେ ମଣିଷ ଭଳି ବଞ୍ଚିବାକୁ ପଡ଼େ; ମଣିଷର ଅଧ୍ୟାତ୍ମ ସାଧନାର (ଯାହା ଦେବ ବା ଦାନବ କାହାରି ସାଧ୍ୟ ନୁହେଁ) ସହଚର ହେବାକୁ ପଡ଼େ । ସୂର୍ପଣଖାର ଆସୁରିକତା ତାର ଅପକର୍ମର ଆଳ, ବାହାନା,

କ୍ଷମଣୀସୂତାର ଦ୍ୱାହ୍ନ ବା ରକ୍ଷାକବଚ ନୁହେଁ, ମଣିଷର ପୃଥିବୀରେ ନୁହେଁ, ମାନସିକ—ଉଦ୍‌ବର୍ତ୍ତନର ସାଧନା—ଭୂମିରେ ନୁହେଁ । ନିଜର ଅସାମର୍ଥ୍ୟକୁ କାର୍ଯ୍ୟ ଅକାର୍ଯ୍ୟର ସମର୍ଥନ ଭୂମି ରୂପେ ଠିଆକଲେ ପୃଥିବୀର ସୃଷ୍ଟି ଅର୍ଥହୀନ ହୋଇଯିବ । ସୂର୍ପଣଖା ଭଳି ଆମେ ସମସ୍ତେ ପ୍ରତି ମୁହୂର୍ତ୍ତରେ ପୃଥିବୀକୁ ନିରର୍ଥକ କରି ଦେଉଥିବା, ତାର ଭବିଷ୍ୟତକୁ ଆମ ଖର୍ବ ଇଚ୍ଛାଭିଳାଷ ପାଖେ ବନ୍ଧା ପକାଇ ଦେଉଥିବା ।

ସୂର୍ପଣଖା ପୃଥିବୀର ପରାସ୍ତ ପ୍ରେମର ଦୁର୍ଭାଗ୍ୟଗ୍ରସ୍ତ ଉଚ୍ଚାରଣ । ସୀତାହରଣ ଓ ଅଶୋକବନ ତାର ଅବଶ୍ୟମ୍ଭାବୀ ରୂପ ପରିଣାମ । ଅଗ୍ନି-ପରୀକ୍ଷାରେ କେବଳ ପୃଥିବୀର ହୃଦୟ ରୂପୀ ସୀତା ବସନ୍ତ ନାହିଁ, ସୂର୍ପଣଖାଭି ବି ପୋଡ଼ି ଭସ୍ମ ହୁଏ । ପୃଥିବୀର ପ୍ରେମନିଷ୍ଠା ସୀତା ହୋଇ ଐଶ୍ୱର୍ଯ୍ୟ ସାଜରେ ଶୁଦ୍ଧାଗ୍ନିରୁ ବାହାରିଆସନ୍ତି, ଆଉ ସୂର୍ପଣଖା ସ୍ୱର୍ଣ୍ଣଲଙ୍କାର ଭସ୍ମକୁଡରେ ନିଜର ଚିହ୍ନ ବର୍ଣ୍ଣ ହଜାଇ ଦିଏ । ପୃଥିବୀର ଚେତନାରେ ସୂର୍ପଣଖାର ସତ୍ତା ବଞ୍ଚିଥିବା ଯାଏ ଲଙ୍କାଦହନ କାଳକାଳ ସଂଘଟିତ ହେଉଥିବ ।

ପୃଥିବୀରେ କେବଳ ପ୍ରେମ ଛଡ଼ା ଆଉ କାହାର କିଛି ଭବିଷ୍ୟତ ନାହିଁ । କେଉଁ ଇଚ୍ଛାଭିଳାଷ ଲାଗି କିଛି ପ୍ରତିଶ୍ରୁତି ନାହିଁ । ଯଦି ସୂର୍ପଣଖାର ବାସନା ଅନ୍ତରାଳରେ ରାମଙ୍କ ପ୍ରତି ଯଥାର୍ଥ ପ୍ରେମରୁ କାଣିଚିଏ ବି ସଂଭବ ଥାଏ, ତାହାହିଁ ତାର ଭବିଷ୍ୟତ ଜନ୍ମାନ୍ତରର, ରୂପାନ୍ତରର ସମ୍ଭାବନା ହୋଇ ଶ୍ରୀରାମଙ୍କ ଆଶୀର୍ବାଦ ଧାରରେ ବଞ୍ଚିରହିଥିବ, ପୃଥିବୀର ପ୍ରେମ ଭାଗ୍ୟର ତୀର୍ଥ-ପଥରେ ଦୁର୍ବାଦଳ ହୋଇ ବିସ୍ତରିଯିବ ।



# ମହାକାଳ ଓ ମହାଜୀବନ

ମଣିଷର ଭାଗ୍ୟ ଇତିହାସରେ ପ୍ରେମ ଓ ମୃତ୍ୟୁର ଭେଟାଭେଟି ଯେତେଥର ଘଟିଛି ପୃଥିବୀ ଆଶ୍ଚର୍ଯ୍ୟ କଟାକ୍ଷରେ ସ୍ଥିର ରହିଯାଇଛି । ଜୀବନ ଅଭାବନୀୟ ଆଶାରେ ଶିହରି ଉଠିଛି । ସେ ମୁହୂର୍ତ୍ତଗୁଡ଼ିକ ପୃଥିବୀ ପାଇଁ ଆଶ୍ଚର୍ଯ୍ୟ ବିଭୂତି-ଦୀପ୍ତ ବିରଳ ମୁହୂର୍ତ୍ତ : ମାର୍‌ଭେଲ ।

ସୃଷ୍ଟି ବକ୍ଷରେ ଘଟଣା ମାତ୍ର ଦୁଇଟି ଘଟେ—ଜନ୍ମ ଓ ମରଣ । ଅନୁଭବ ଦୁଇ ରୂପରେ ଉପଜାତ ହୁଏ—ସୁଖ ଓ ଦୁଃଖ । ଦୁଇ ପ୍ରାନ୍ତକୁ ଯୁକ୍ତ କରି ଯାହା ପ୍ରବାହିତ, ତାହା ଜୀବନ । ସେ ପ୍ରବାହର ଗତିଚ୍ଛନ୍ଦ—ପ୍ରେମ ।

ମର-ପୃଥିବୀରେ ଜନ୍ମକାଳରୁ ଜୀବନ କେବଳ ଗୋଟିଏ ଘଟଣାର ଅନୁସରଣ କରିଥାଏ ମୃତ୍ୟୁ । ଜୀବନ ଥିବାଟା ସବୁବେଳେ ତାର ନ ଥିବା—ଅବସ୍ଥାର ପ୍ରଚ୍ଛଦପଟରେ ଠିଆ । ମୃତ୍ୟୁ ଏକ ଘଟଣା ରୂପରେ ଆବିର୍ଭୂତ ହେଲେ ବି ତାହା ଯଥାର୍ଥ ଘଟଣା ନୁହେଁ, ଘଟଣାହୀନତା; ସବୁ 'ଘଟିବା' କ୍ରିୟା ଯେଉଁ ବିନ୍ଦୁରେ ସମାପ୍ତ ସେଇ ନାସ୍ତି ବାଚକତା । ସେ ନାସ୍ତିବାଚକ ମୁହୂର୍ତ୍ତର ଅସ୍ତିତ୍ୱକୁ ଜୀବନର ବାକି ସବୁ ପ୍ରତ୍ୟକ୍ଷ ସତ୍ୟତା ଅସ୍ୱୀକାର କରି ଫାଙ୍କି ଉଡ଼ାଇ ଦେଇପାରନ୍ତି ନାହିଁ । ଅସ୍ତିତ୍ୱ ପ୍ରଥମ ପ୍ରକାଶ ଆବିର୍ଭାବ ମୃତ୍ୟୁର ପ୍ରଚ୍ଛଦପଟରେ । ମାତ୍ର ଯେତେବେଳେ ସେ ଏକ ନାସ୍ତିବୋଧ ପାଖେ ଆତ୍ମ-ସମର୍ପଣ କରିଦିଏ ସେତେବେଳେ ତାହା ଆପେ ଆସ୍ତିବାଚକ ହୋଇଯାଏ । ପ୍ରଥମ ପ୍ରକାଶର ମୁହୂର୍ତ୍ତ ଓ ଶେଷ ବିଲୟର କ୍ଷଣ ମଧ୍ୟବର୍ତ୍ତୀ ଜୀବନ କାଳ ମୃତ୍ୟୁର ଅନ୍ଧାର ଗୁହା ଦ୍ୱାରରେ ଏକ ସ୍ପର୍ଦ୍ଧିତ ହୁଙ୍କାର ।

ମୃତ୍ୟୁରେ ହଜିଯିବ ଜାଣି ମଧ୍ୟ ଜୀବନ ବଞ୍ଚିଥିବାର ମୁହୂର୍ତ୍ତମାନଙ୍କୁ ମୃତ୍ୟୁ ବିରୋଧରେ ନିଜ ପ୍ରତିଷ୍ଠା ରୂପେ ସ୍ଥାପିତ କରେ । ମୃତ୍ୟୁର ଅନ୍ଧାର ବଳୟ ଭେଦକରି ନିମିଷେ ବି ବିଦ୍ୟୁତରେଖା ପ୍ରାୟ ଉଦ୍‌ଭାସିତ ହେଉଥିବା ଜୀବନ, ଅନ୍ଧାରକୁ ସେ ଏକ ସବଳ ପ୍ରତିବାଦ । ଜୀବନରୂପୀ କ୍ଷଣଲଗ୍ନର କ୍ଷୀଣ-ଆଲୋକ-ଆଧାରକୁ ମୃତ୍ୟୁ ଗ୍ରାସ କରିଦେଇପାରେ, ଜୀଇଁ ରହିବାର ଆକାଂକ୍ଷାକୁ ନାଶ କରିପାରିବ ନାହିଁ, ଜୀବନକୁ ନାସ୍ତି କରିପାରିବ ନାହିଁ ।

ଜୀବନର ଏଇ ମୃତ୍ୟୁକୁ ସ୍ପର୍ଦ୍ଧା କରିବାର ଶକ୍ତି—ପ୍ରେମ, ଯାହା ଆନନ୍ଦର ଆଧାରରେ ସଂଜୀବିତ ରହିଥାଏ ବୋଲି ମୃତ୍ୟୁ—ପ୍ରାପ୍ତ ବସ୍ତୁକୁ ସ୍ମୃତି ରୂପେ ସାମୟିକ ଉଲ୍ଲଙ୍ଘନ କରେ, ନବଜନ୍ମ ରୂପେ ମରଣକୁ ଅବଲୀଳା କ୍ରମେ ପାରି ହୋଇଯାଏ । ଧରଣୀରେ ତେଣୁ ମୃତ୍ୟୁସହ ଜୀବନର ସାକ୍ଷାତ୍କାର ପ୍ରେମର ସଂଗ୍ରାମ ଭୂମିରେ ହିଁ ଘଟିଥାଏ ।

ହାରୁ ବା ଜିତୁ, ମରଣ ପାଖେ ଜୀବନ ପ୍ରେମକୁ ଠିଆ କରିଛି, ପ୍ରଶ୍ନ କରିଛି, ବିଦ୍ରୋହ କରିଛି । ପ୍ରତିକୂଳତା ସହ ସାଲିସକାରୀ ଜୀବନର ବହୁ ପାର୍ଶ୍ୱ-ସହଚର ଅଛନ୍ତି, ମାତ୍ର ପ୍ରେମ ଚିର ବିଦ୍ରୋହୀ, ଜୀବନର ବିଶ୍ୱସ୍ତ ଓ ଅନ୍ତରଙ୍ଗ ନିର୍ଭୀକ ଅଙ୍ଗରକ୍ଷୀ ।

ବିଭିନ୍ନ ଦେଶର ପୁରାଣ ଲୋକକଥା ଓ କାବ୍ୟଧାରାରେ ମାନବ-ଜୀବନରେ ପ୍ରେମର ମହିମାମୟ ଆବିର୍ଭାବ ଓ ମୃତ୍ୟୁ ସହ ସଂଘର୍ଷର ସଂବାଦ ଲିପିବଦ୍ଧ ।

ବହୁ ସ୍ଥଳରେ ତ ଜୀବନ ପ୍ରେମ ପାଇଁ ମରଣକୁ ମାନନେଇଛି । ମାତ୍ର ପ୍ରେମ ମୃତ୍ୟୁ ପାଖରୁ ଜୀବନକୁ ନିଜ ସାମର୍ଥ୍ୟରେ ଫେରାଇ ଆଣିଛି, ସେ ବିରଳ କାହାଣୀ ପୃଥିବୀର ପ୍ରେମ ଭାଗ୍ୟର ସଫଳ ଯାତ୍ରା-ସଂବାଦ ।

ଭାରତୀୟ ମହାଗ୍ରନ୍ଥ ମହାଭାରତରେ ରୁରୁ-ପ୍ରମଦ୍ଵରା ଓ ସାବିତ୍ରୀ-ସତ୍ୟବାନ ପ୍ରସଙ୍ଗ ଏବଂ ଗ୍ରୀକ୍ ପୁରାଣର ଅର୍ଫିୟୁସ୍-ଇରୁଡ଼ାଇସ କାହାଣୀରେ ପ୍ରେମର ଏଇ ମହିମାମୟ ଆବିର୍ଭାବ ଉଦ୍‌ଘୋଷିତ ।

ତିନୋଟି ଉପାଖ୍ୟାନରେ ମାନବଜୀବନରେ ପ୍ରେମର ଭୂମିକା ଓ ମୃତ୍ୟୁର ସମ୍ମୁଖରେ ତାର ନିସ୍ତାର ବିଭିନ୍ନ ରୂପପରିଚୟ ପ୍ରକଟିତ । ଅର୍ଫିୟୁସ ପ୍ରସଙ୍ଗଟି ପ୍ରେମର ମରଣ-ପୀଡ଼ିତ ଆର୍ତ୍ତ ସଙ୍ଗୀତ; ମୃତ୍ୟୁକୁ ସ୍ତବପାଠ ଓ ସନ୍ତୁଷ୍ଟ କରି ପ୍ରିୟାର ଜୀବନ ଭିକ୍ଷାରେ ସାମୟିକ ସଫଳ ହେବା ବାର୍ତ୍ତା । ସଙ୍ଗୀତଜ୍ଞ ଅର୍ଫିୟୁସ୍ ପ୍ରିୟାପତ୍ନୀ ଏରୁଡାଇସ୍‌ର ମୃତ୍ୟୁରେ ବ୍ୟଥିତ ହୋଇ ପାତାଳ ଲୋକରେ ମୃତ୍ୟୁଦେବତାଙ୍କୁ ସଙ୍ଗୀତରେ ମୁଗ୍‌ଧ କରି ପତ୍ନୀଙ୍କୁ ପୁନର୍ଜୀବିତ କରାଇଛନ୍ତି । ମାତ୍ର ଶେଷରେ ପୁନରାୟ ବିଭିନ୍ନ ବିଚିତ୍ର ପରିସ୍ଥିତିରେ ତାଙ୍କୁ ହରାଇ ନିଜର ଖଣ୍ଡବିଖଣ୍ଡିତ ଦେହର ଛିନ୍ନାବଶେଷରେ ପ୍ରାଣପ୍ରିୟାର ନାମ ମନ୍ତ୍ରପ୍ରାୟ ଗାନ କରି ମୃତ୍ୟୁ ପାଖେ ପ୍ରେମକୁ ଅମର କରି ଯାଇଛନ୍ତି ।

ରୁରୁ ପ୍ରମଦ୍‌ବରା ଉପାଖ୍ୟାନରେ ପ୍ରେମର ବ୍ୟାକୁଳତା, ନିଷ୍ଠା, ତ୍ୟାଗ ସହ ସମର୍ପଣର ଆଉ ଏକ ଉଜ୍ଜ୍ୱଳ ରୂପଚିତ୍ର ପ୍ରତିଫଳିତ ହୋଇଛି । ନବପ୍ରଣୟିନୀ ମେନକାକନ୍ୟା ପ୍ରମଦ୍‌ବରାର ସର୍ପାଘାତଜନିତ ଅକାଳ ମୃତ୍ୟୁରେ ବ୍ୟାକୁଳ ଚ୍ୟବନବଂଶଜ ଋଷିପୁତ୍ର ରୁରୁ ମୃତ୍ୟୁଲୋକକୁ ଯାଇ ଶମନ ପାଖେ ନିଜ ଜୀବନର ଅର୍ଦ୍ଧାୟୁ ଦାନ ସର୍ତ୍ତରେ ପ୍ରିୟାର ପୁନର୍ଜୀବନର ବରଦାନ ଲାଭ କରିଛନ୍ତି । ତ୍ୟାଗର ଶକ୍ତିଯୁକ୍ତ ହୋଇ ପ୍ରେମର ଆବିର୍ଭାବ, ମୃତ୍ୟୁ ସହ ଜୀବନର ସାଲିସ- ମାନବାତ୍ମାର ଏକ କାଙ୍କ୍ଷିତ ସାଫଲ୍ୟର ରୂପଚିତ୍ର ।

ଯଥାର୍ଥରେ ସାବିତ୍ରୀ-ସତ୍ୟବାନ ପ୍ରସଙ୍ଗ ମାନବାତ୍ମର ଶକ୍ତିରୂପେ ପ୍ରେମର ସାମର୍ଥ୍ୟ ଓ ସଫଳତାର ଜୟକାବ୍ୟ । ସାବିତ୍ରୀ ମୃତ୍ୟୁ ଦେବତାଙ୍କୁ ପ୍ରେମର ମହିମା ଓ ଶକ୍ତିରେ ପରାଭୂତ କରି ସତ୍ୟବାନଙ୍କୁ ପୁନର୍ଜୀବିତ କରାଇବାରେ ମର୍ତ୍ତ୍ୟଲୋକରେ ହିଁ ମରଣ ଦେବତାଙ୍କୁ ଜୀବନ ପାଖେ ପଦାନତ କରାଇଛନ୍ତି ।

ଲକ୍ଷଣୀୟ, ପ୍ରଥମ ପ୍ରସଙ୍ଗ ଦୁଇଟିରେ ପ୍ରେମ ପୁରୁଷ ସତ୍ତାକୁ ଆଶ୍ରୟ କରି ତାର ସାହସ, ପୌରୁଷ ଓ ଦୃଢ଼ତା ସାହାଯ୍ୟରେ ମୃତ୍ୟୁର ସମ୍ମୁଖୀନ ହୋଇଛି । ଶେଷ ପ୍ରସଙ୍ଗରେ ସେ ପ୍ରେମ ନାରୀ ସତ୍ତାଶ୍ରିତ, ଧୈର୍ଯ୍ୟ, ବିଶ୍ୱାସ ଓ ପ୍ରତ୍ୟୟରେ ତାର ପଦଚାଳନା ।

ମନ, ପ୍ରାଣ, ଦେହ—ସତ୍ତାର ବିବିଧ ସ୍ତରରେ ପ୍ରେମର ପ୍ରକାଶ । ଊର୍ଦ୍ଧ୍ୱ ଚେତନାଠାରୁ ଓ ଅବଚେତନର ନିମ୍ନସ୍ତର ପର୍ଯ୍ୟନ୍ତ ତାର ବିସ୍ତାର । ନିମ୍ନ ଚେତନାରେ ତାର ସେ ପ୍ରକାଶ କ୍ଷୀଣ, ଖଣ୍ଡ, ବିକୃତ ଓ ଊର୍ଦ୍ଧ୍ୱ ସ୍ତରରେ ସେ ପ୍ରକାଶ ଦିବ୍ୟ, ସମର୍ଥ ଓ ପରିପୂର୍ଣ୍ଣ ସୁନ୍ଦର । ମାନବ ସତ୍ତାରେ ପ୍ରେମାନୁଭବର ଏଇ ସ୍ତରଗତ ପ୍ରକାଶ ଏବଂ ତାର ଅବଶ୍ୟମ୍ଭାବୀ ପରିଣାମ ସଦୃଶ ଅନ୍ତର୍ଦ୍ୱନ୍ଦ୍ୱ ଲାଗି ରହିଥାଏ । ପ୍ରେମକୁ ନିମ୍ନ ଚେତନାରୁ ଉତ୍ତୋଳିତ କରି ଊର୍ଦ୍ଧ୍ୱ ସ୍ତରରେ ଅବସ୍ଥାପିତ କରିବା ହେଉଛି ମାନବାତ୍ମାର ଅଧ୍ୟାତ୍ମ-ପ୍ରେମ ସାଧନା । ଉପାଖ୍ୟାନ ତିନୋଟି ସେଇ ସାଧନାରୂପର ସଂକେତ ହୋଇ ଅନୁଶୀଳିତ ହୋଇପାରନ୍ତି ।

ଗ୍ରୀକ୍ ପୁରାଣରେ ଏରୁଡ଼ାଇସ ପାର୍ଥିବ ସ୍ଥୂଳତା, ପାପ ଓ ମୃତ୍ୟୁର, କ୍ଷୟଶୀଳତାର ପ୍ରତୀକ । ଅର୍ଫ୍ୟୁସ୍ ଦିବ୍ୟଚେତନା, ଉତ୍ତରିତ ଅନୁଭବ ଓ ଅଧ୍ୟାତ୍ମ-ଆକୂତିଯୁକ୍ତ ଶୁଦ୍ଧ ସତ୍ତା । ସେ ସ୍ୱର୍ଗୀୟ ସଙ୍ଗୀତର ସାଧକ । ତାର

ଗୀତରେ ମାନବ ଚିତ୍ତର ଅଧ୍ୟାତ୍ମ-ପ୍ରବଣତା ଓ ଅପାର୍ଥିବତାର ଆକୂତି ପ୍ରକଟିତ । ଉଭୟେ ମିଳିତ ଭାବେ ପାର୍ଥିବ ସତ୍ତାର ଦ୍ୱିବିଧ ପ୍ରକାଶ । ସତ୍ତାର ଉନ୍ନତ ଚେତନା ପାର୍ଥିବ ଜୀବନର ଊର୍ଦ୍ଧ୍ୱରେ ଆଲୋକ ଓ ଆନନ୍ଦର ଅମୃତ ଲୋକରେ ବିଚରଣ କରେ । ତାର ସଙ୍ଗୀତରେ ଦିବ୍ୟଧାମର ବାଣୀ ଓ ମୂର୍ଚ୍ଛନା ଝଂକୃତ ହୁଏ । ମାତ୍ର ସତ୍ତାର ଚିଦ୍‌ଘନ ରୂପଟି ଯେତେ ସ୍ୱର୍ଗୀୟ ମହିମା ମଣ୍ଡିତ ହେଉନା କାହିଁକି ତାହାର ବହୁ ସ୍ତର, ଚେତନାଂଶ ସ୍ଥୂଳ ଓ ଜଡ଼ । ସେଇ ସ୍ତରରେ ସତ୍ତା ମୃତ୍ୟୁର ନିର୍ବେଦତାକୁ ଅନିବାର୍ଯ୍ୟତଃ ଭେଟେ । ସର୍ବାନ୍ତକରଣରେ ଶୁଦ୍ଧ ଓ ସମର୍ଥ ହୋଇପାରିଲେ ସତ୍ତା ପୃଥିବୀରେ ମୃତ୍ୟୁକୁ ଜୟ କରିପାରିବ । ଅମରତ୍ୱ ସଚେତନ ଓ ଅଚେତନ ଉଭୟ ସ୍ତରର ସାମର୍ଥ୍ୟକୁ ଅପେକ୍ଷା ରଖେ । * ମାନବ ସତ୍ତାର ଊର୍ଦ୍ଧ୍ୱ ଓ ନିମ୍ନ ଦୁଇ ଚେତନା ସ୍ତରର ପ୍ରତୀକ ରୂପେ ଅର୍ଫ୍ୟୁସ ଓ ଏଉରିଡ଼ାଇସଙ୍କ ସମ୍ବନ୍ଧ ଏକ ଅଖଣ୍ଡ ପ୍ରେମ ସମ୍ବନ୍ଧ । ଦିବ୍ୟଚେତନା ନିମ୍ନ-ଚେତନାକୁ ଉତ୍ତୋଳିତ ଓ ପରିଶୁଦ୍ଧ ନ କଲା ପର୍ଯ୍ୟନ୍ତ ନିଜେ ପୂର୍ଣ୍ଣ ହୁଅନ୍ତି ନାହିଁ । ମୁକ୍ତି ସତ୍ତାର ସଚେତନ ଓ ଅବଚେତନ ଉଭୟ ସ୍ତରକୁ ଅପେକ୍ଷା ରଖେ । ବାସନାଲୋକରେ ଘୂରି ବୁଲୁଥିବା ପ୍ରାଣସତ୍ତା ଓ ନିର୍ବେଦଗ୍ରସ୍ତ ହେଉଥିବା କ୍ଷୟମାଣ ଦେହସତ୍ତାକୁ ମୃତ୍ୟୁ ଘେରରୁ ନ ମୁକୁଳାଇବା ପର୍ଯ୍ୟନ୍ତ ଚୈତସତ୍ତା ଅପୂର୍ଣ୍ଣ ବିଚ୍ଛିନ୍ନ ଓ ବିରହବ୍ୟଥିତ ହେଉଥାଏ । ମୃତ୍ୟୁ ଗହ୍ୱରରୁ ତାକୁ ବାରବାର ଉଠାଉଥାଏ । ତାପାଇଁ ସହସ୍ର ଖଣ୍ଡରେ ଭାଙ୍ଗି ଯାଉଥାଏ ଓ ତା ସତ୍ତ୍ୱେ ସହସ୍ର ରୂପ ଧରି ସହସ୍ର ଜନ୍ମ ନେଉଥାଏ । ସବୁ ଜନ୍ମ ସବୁ ରୂପ ତା ପ୍ରେମର ନିଷ୍ଠା-ସଂଗୀତ । ଅବଚେତନର ଅତଳ ଅଗମ୍ୟ ପାତାଳକୁ ପ୍ରେମର ସହାୟତାରେ ଯାଇ ଦିବ୍ୟ ଅନ୍ତରାତ୍ମା ମଣିଷକୁ ଊର୍ଦ୍ଧ୍ୱ-ଲୋକକୁ ଉଠାଇବାର ଯେ ସାଧନା କରେ, ମୃତ୍ୟୁ ପାଖେ ଅବନତ ପ୍ରାର୍ଥନା ଓ କରୁଣା ଭିକ୍ଷା

---

* Orphues and his music represent the higher redemptive power of human soul, Euridice—the lower, which are particularly subject to evil and death. The sufferings of Orphues in the upper and under words represent the sacrifices necessary if the soul in to redeem the lower self which it loves & without which it cannot find salvation. John Macqueen—Allegory-P. 4.

ସେଥିପାଇଁ ପର୍ଯ୍ୟାପ୍ତ ନୁହେଁ, ସାମର୍ଥ୍ୟର ଭୂମିରେ ହିଁ ମୃତ୍ୟୁକୁ ଭେଟିବାକୁ ହୁଏ । ଅର୍‌ଫ୍ୟୁସ୍ ଆତ୍ମାର ପ୍ରେମର ଦମ୍ଭରେ ଯାହା ଅରେ ସାଧନ କରି ପାରିଛନ୍ତି, ପାର୍ଥିବ ଚେତନାସ୍ତରର ଅନ୍ୟାନ୍ୟ ଶକ୍ତିହୀନତା, ପ୍ରତିକୂଳତା ତାହା ପୁଣି ଛଡ଼ାଇ ନେଇଛି । କେବଳ ଚିଦ୍‌ସତ୍ତାର ଉତ୍ତରଣ ନୁହେଁ, ଦେହ-ପ୍ରାଣ-ମନ ସ୍ତରର ଦିବ୍ୟ ରୂପାନ୍ତର ବ୍ୟତିରେକେ ମୃତ୍ୟୁ କବଳରୁ ଜୀବନର ନିସ୍ତାର ନାହିଁ, 'ନାୟମାତ୍ମା ବଳହୀନେନ ଲଭ୍ୟ'—ସେ ବଳ ଶାରୀରିକ ସାମର୍ଥ୍ୟ, ଦେହ-କୋଷରେ (cellular) ମଧ୍ୟ ସଂଜୀବ ହୋଇ ରହିବାର ସାମର୍ଥ୍ୟଯୁକ୍ତ ହେବ, ପୃଥିବୀର ଭାଗ୍ୟରେ ତାହା ଏଯାବତ୍ ସଂଭବ ହୋଇନାହିଁ—ମାତ୍ର ପୃଥିବୀ ସେ ଆସ୍‌ପୃହାହୀନ ନୁହେଁ । ତାର ପ୍ରତିଟି କୋଷ ଅନୁକୋଷରେ; ସେଇ ପ୍ରାର୍ଥନାଟି ଏବେ ବି ଉଦ୍‌ଗୀତ: (cellular prayer) ।

ଜୀବନ ପ୍ରିୟତମ, ମାତ୍ର ଆୟୁ ଅଣାୟତ୍ତ । ବଞ୍ଚି ରହିବାର ଇଚ୍ଛା ପ୍ରବଳତମ, ଉଦଗ୍ରତମ ଇଚ୍ଛା, ତଥାପି ଗୋଟିଏ କ୍ଷେତ୍ରରେ ସେ ଇଚ୍ଛା ସ୍ୱତଃ ଦମିତ ହୋଇପାରେ, ତାହା ପ୍ରେମ । ସେ ପ୍ରେମକୁ ନମସ୍କାର, ଯାହା ଅସ୍ତିତ୍ୱର ଅନ୍ତର୍ଗତ ମୂଳ ଅଭୀପ୍‌ସା ବଞ୍ଚି ରହିବାକୁ ପ୍ରିୟଜନ ପାଇଁ ଉତ୍ସର୍ଗ କରିଦେଇ-ପାରେ । ରୁରୁ-ପ୍ରମଦ୍‌ବରା ଉପାଖ୍ୟାନରେ ମଣିଷ 'ଜୀବନରଙ୍କତା'ରୁ ମୁକ୍ତ ହେବାର ଶକ୍ତି ପାଇଛି ପ୍ରେମଠାରୁ । * ସର୍ପାଘାତରେ ପ୍ରମଦ୍‌ବରାଙ୍କର ଅକାଳ ମରଣରେ ରୁରୁ ଦୁଃଖ ସନ୍ତାପରେ ମୂକପ୍ରାୟ ହୋଇ ଯାଇଛନ୍ତି । ମାତ୍ର ତାଙ୍କ ହୃଦୟର ଆର୍ତିରେ ନିଦ୍ରିବ ମୁଖରିତ ହୋଇଯାଇଛି । ପ୍ରକୃତି ଚକିତ, ବନାନୀ ସ୍ତବ୍‌ଧ, ଦେବକୁଳ ବିଚଳିତ ହୋଇଯାଇଛନ୍ତି । ଶେଷକୁ କାମଦେବ ଆବିର୍ଭୂତ ହୋଇ ତାଙ୍କୁ ସାନ୍ତ୍ୱନା ଦେଇ ବୁଝାଇଛନ୍ତି ଯେ, ପ୍ରେମ ଏଇ ପୃଥିବୀର ସଂବନ୍ଧ ମାତ୍ର । ହୃଦୟର ଅନୁଭବରେ ତାହା ଶ୍ରଦ୍ଧା, ସ୍ନେହ, ସୌଖ୍ୟ, ପ୍ରୀତି ରୂପେ ଉପଜାତ ଓ ଜୀବନରେ ମଧୁରତା ଏବଂ ସୁନ୍ଦରତା ରୂପେ ଅନ୍ତଃସଳିଳା । ମାତ୍ର ସେ ମୃତ୍ୟୁ ପାଖେ ମୂହ୍ୟମାନ । ପ୍ରମଦ୍‌ବରାଙ୍କ ଜୀବନ ଫେରାଇ ଦେବା ଦେବତା-ମାନଙ୍କର ବି ସାଧ୍ୟାତୀତ । ତାହା କେବଳ ମୃତ୍ୟୁଦେବ ପାରିବେ । ମାତ୍ର ସେ ଦେବତା ଅନ୍ୟମାନଙ୍କ ଭଳି ଦାନ ଦକ୍ଷିଣା ଯଜ୍ଞକର୍ମରେ ସନ୍ତୁଷ୍ଟ ହୁଅନ୍ତି ନାହିଁ, ଏକମାତ୍ର ଆୟୁ ତାଙ୍କର ପ୍ରିୟ । ରୁରୁ ନିଜର ଆୟୁ ବିନିମୟରେ ତାଙ୍କଠାରୁ

* ଶ୍ରୀ ଅରବିନ୍ଦଙ୍କ କାବ୍ୟ Love & Deathର କାହାଣୀ ଅନୁସାରେ ।

ପ୍ରମଦ୍‌ବରାଙ୍କ ଜୀବନ ଫେରାଇ ଆଣି ପାରନ୍ତି ବୋଲି ସୂଚନା ଦେଇ କାମଦେବ ରୁରୁଙ୍କୁ ଏକ ଅମ୍ଳାନ ଫୁଲରେ ଆଶୀର୍ବାଦ କରିଗଲେ । ରୁରୁ ତତ୍‌କ୍ଷଣାତ୍ ନିଜର ଆୟୁ ଉତ୍ସର୍ଗ କରିଦେବାର ସଂକଳ୍ପ କରି ସେହି ଫୁଲର ସାହାଯ୍ୟରେ ସପ୍ତପାତାଳ ଭେଦି ଯମଙ୍କର ମୃତ୍ୟୁଲୋକରେ ପ୍ରବେଶ କଲେ । ମୃତ୍ୟୁଦେବତା ତାଙ୍କୁ ଯୁକ୍ତି ଓ ପ୍ରଲୋଭନର ବିବିଧ ଉପାୟରେ ଭୁଲାଇ ଫେରାଇ ଦେବାକୁ ଚେଷ୍ଟା କଲେ । ଦୁର୍ଲ୍ଲଭ, ଏକମାତ୍ର ନିଜର ବୋଲି ମିଳିଥିବା ଜୀବନ, ସବୁ ଖୁସି ସ୍ୱପ୍ନ ରୂପରସର ସ୍ୱାଦ ଜୀବନକୁ ନେଇ । ସେ ଜୀବନକୁ ଅନ୍ୟ ପାଇଁ ଫିଙ୍ଗିଦେବା ନିର୍ବୋଧତା । ରୁରୁ ପ୍ରମଦ୍‌ବରାଙ୍କ ଜୀବନାଶା ତ୍ୟାଗକରି ପୂର୍ଣ୍ଣ ପରମାୟୁରେ ଫେରିଯାନ୍ତୁ । ଯଶ ଓ ଐଶ୍ୱର୍ଯ୍ୟର ଏକ ଦୀର୍ଘ ଜୀବନ ପୃଥିବୀରେ ତାଙ୍କ ଅପେକ୍ଷାରେ । ମୃତ୍ୟୁଦେବତା ସେ ଜୀବନର ଆଖି ଝଲସା ଚିତ୍ର ମଧ୍ୟ ତାଙ୍କୁ ଦେଖାଇଦେଲେ । ମାତ୍ର ରୁରୁ ସଂକଳ୍ପରେ ଅଟଳ । କେଉଁ ଐଶ୍ୱର୍ଯ୍ୟର ଅହଂକାର ସେ ଜୀବନ କରିପାରେ ପ୍ରେମର ଶୂନ୍ୟ ହାତ କରି ସେ ଯଦି ଦାଣ୍ଡ ଧୂଳିରେ ଲୋଟୁଥାଏ ? କି ସ୍ୱାଦ ସେ ଜୀବନର ବିରହର ଲୁଣି ଜ୍ୱାଳାରେ ଯାହା ନିରନ୍ତର ଦଗ୍ଧ ହେଉଥାଏ ?

ମଣିଷର ଆୟୁ ଉପରେ ଅଧିକାର ନାହିଁ ସତ; ମାତ୍ର ପ୍ରେମ ଯଦି ଯୁଗ୍ମ ଜୀବନକୁ ଏକ କରିଦିଏ, ମୃତ୍ୟୁର କି ଅଧିକାର ଅଛି ସେ ଯୁଗ୍ମତାକୁ ଛେଦ କରିବ ? ମରଣ ଯଦି ଜଣକ ପାଇଁ ଉଦ୍ଦିଷ୍ଟ, ମୃତ୍ୟୁର ଯଦି ଅଧିକାର ଗୋଟିଏ ଜୀବନ ଉପରେ ଅନ୍ୟଜଣକୁ ଜୀବନ୍ମୃତ କରିବାର, ମରଣାନ୍ତ ଯନ୍ତ୍ରଣା ଦେବାର କି ଅଧିକାର ତାର ଅଛି ? —ମଣିଷର ଏଇ ଯୁକ୍ତି, ବିଶ୍ୱର ପାଖେ, ମୃତ୍ୟୁ ଅର୍ଦ୍ଧାୟୁର ସର୍ତ୍ତ ବାଡ଼ି ସାମୟିକ ସାଲିସ୍ କରିଛି । ମାତ୍ର ମୃତ୍ୟୁ ଉପରେ ଜୀବନର ବିଜୟ ନୁହେଁ, କେବଳ ଜୀବନ-ବାସନା ଉପରେ ପ୍ରେମର ବିଜୟ, ସେଇ ପ୍ରେମ—ଯାହା ଏକାନ୍ତ ଜୀବନକୁ ମୃତ୍ୟୁ ପ୍ରାୟ ମଣେ, ଜୀବନ ବିନିମୟରେ ଏକାକୀତ୍ୱର ଅଭିଶାପରୁ ମୁକ୍ତ ହେବାକୁ ଚାହେଁ । ରୁରୁଙ୍କ ମାଧ୍ୟମରେ ମୃତ୍ୟୁ ସହ ମଣିଷର କଷ୍ଟି ବୁଝାମଣା, ମହାକାଳ ସହ ଖଣ୍ଡକାଳର ସନ୍ଧିପତ୍ର ସ୍ୱାକ୍ଷର । ପ୍ରେମ ପାଇଁ ଆୟୁ ଦାନ, ଏ ଦାନ ସହଜ ନୁହେଁ ତ, ପୁଣି ମୃତ୍ୟୁ ପାଖେ ଏ ଦାନ ଗୃହୀତ ହେବା ଆଉ ଏକ ଦୁଷ୍କରତା; ରୁରୁଙ୍କ ବିଶ୍ୱସ୍ତତା, ଦୃଢ଼ତା, ଧୈର୍ଯ୍ୟ ଓ ସାହସ ହୁଏତ ତାଙ୍କ ପ୍ରେମକୁ ମୃତ୍ୟୁଦେବତାଙ୍କ ପାଖେ ସ୍ୱୀକୃତଯୋଗ୍ୟ କରିପାରିଛି । ଏ ଦାନ ମାନବାତ୍ମାର ଇତିହାସରେ ଏକ ସଫଳ ପଦ-ସଙ୍କେତ ।

ମୃତ୍ୟୁ ଉପରେ ପ୍ରେମର ଚୂଡ଼ାନ୍ତ ବିଜୟ ସଂବାଦ ସାବିତ୍ରୀ ସତ୍ୟବାନ ପ୍ରସଙ୍ଗରେ ଉଦ୍‌ଘୋଷିତ । ମହାକାଳ ଓ ମହାଜୀବନର ସାକ୍ଷାତ୍ ପର୍ବରେ ସୃଷ୍ଟିବକ୍ଷରେ ମାନବାତ୍ମାରେ ପ୍ରେମର ମହାନ୍ ଐଶ୍ୱର୍ଯ୍ୟମୟ ପରିପ୍ରକାଶ ଯେ ଘଟିଛି, ସେ ମହାନାଟକରେ ସାବିତ୍ରୀ ସତ୍ୟବାନ ଓ ସ୍ୱୟଂ କୃତାନ୍ତ ପ୍ରେମର ଯଥାମୂଲ୍ୟ ଦେଇ ସ୍ୱମର୍ଯ୍ୟାଦାରେ ଅଧିଷ୍ଠିତ ହୋଇଛନ୍ତି ।

ମଣିଷ ମରଣଶୀଳ : ଅସତ୍ୟର ଖର୍ବ ଭୂମିରେ ବଞ୍ଚିଥାଏ ବୋଲି । ମାତ୍ର ସତ୍ୟର ଧ୍ରୁବପଦରେ ଅବିଚଳିତ ଥିବା ସତ୍ତା ଆଉ ବ୍ୟକ୍ତିମାତ୍ର ନୁହେଁ; ସେ ସତ୍ୟବାନ, ଆଉ ପ୍ରେମ ସତ୍ୟ-ପରିଣୀତା ମହାଶକ୍ତି । ମଣିଷ ପ୍ରେମକୁ ସତ୍ୟର ଭୂମିରୁ ବାରବାର ଘୋଷାଡ଼ି ଆଣୁଥିବା ଯାଏ, ଠିଆକରି ପାରୁନଥିବା ଯାଏ ଅମର ଜୀବନ ଓ ଅମର ପ୍ରେମର କଥା କହିବାର ଅଧିକାର ତାର ନାହିଁ । ତଥାପି ଏ ପୃଥିବୀରେ ତାର ସଂଭାବନାକୁ ସ୍ୱୀକୃତ ଓ ରୂପାୟିତ କରିବାର ଅହରହ ପ୍ରୟାସ ଚାଲିଥାଏ ଏବଂ ମାନବାତ୍ମାର ସେ ପରୀକ୍ଷା ଦେଇଥାନ୍ତି ସାବିତ୍ରୀ ସତ୍ୟବାନ ।

ମୃତ୍ୟୁଦେବତା ସାବିତ୍ରୀଙ୍କୁ ପ୍ରଥମେ ଭୟ, ପରେ ପ୍ରଲୋଭନ ଏବଂ ଶେଷରେ ସୃଷ୍ଟିତତ୍ତ୍ୱର ଜଟିଳ ନିୟମ ରହସ୍ୟରେ ମୃତ୍ୟୁର ଅନିବାର୍ଯ୍ୟତାକୁ ପ୍ରତିଷ୍ଠା କରି ତାଙ୍କୁ ସତ୍ୟବାନଙ୍କ ଜୀବନ-ଲାଭ ଉଦ୍ୟମରୁ ବିରତ କରାଇବାକୁ ବହୁ କୌଶଳ କରିଥିଲେ ବି ସତ୍ୟର ଧ୍ରୁବଭୂମିରେ ଅଚଳ ରହି ପ୍ରେମରୂପା ସାବିତ୍ରୀ ନିଜର ଜ୍ଞାନ ବଳରେ ସେ ସବୁ ଖଣ୍ଡନ କରିଦେଇଛନ୍ତି । ସବୁ ଭୟକୁ ସେ ଜୟ କରିଛନ୍ତି, ସବୁ ପ୍ରଲୋଭନକୁ ପରିହାସ । ସବୁ ତତ୍ତ୍ୱର ହିଦ୍ରଜାଲକୁ ନିଜର ସତ୍ୟ-ଉପଲବ୍ଧିର ତୀକ୍ଷ୍ଣତାରେ ଛିନ୍ନ କରି ସେ ମୃତ୍ୟୁଦେବତାକୁ ଜଣାଇ ଦେଇଛନ୍ତି ଅମରାତ୍ମାର ମହିମା । ମୃତ୍ୟୁ ସତ୍ୟ ନୁହେଁ, ସତ୍ୟ ଜୀବନ; ସେଥିପାଇଁ ତ ଶାଶ୍ୱତଙ୍କର ବିରାଟ ପରିକଳ୍ପନାର ରୂପ ପ୍ରୟାସ ଏ ବିଶାଳ ଜଗତ । ତାଙ୍କର ଆବେଗ ଭରା ପ୍ରାଣବାୟୁରେ ସ୍ପନ୍ଦିତ ଏ ସୃଷ୍ଟି । ମର୍ତ୍ତ୍ୟ ରୂପଟିଏ ନିର୍ମାଣି ତା ଭିତରେ ସେ ଭରିଦେଇଛନ୍ତି ତାଙ୍କର ଅନନ୍ତ ଅଭିଳାଷ, ଅନ୍ତରାତ୍ମାରେ ଭରି ଦେଇଛନ୍ତି ପ୍ରେମ । ମାନସ ପ୍ରତିମାଟିଏ ଗଢ଼ିଦେଇ ତା ଭିତରେ ସଂଭାରି ଦେଇଛନ୍ତି ବିପୁଳ ଐଶ୍ୱର୍ଯ୍ୟମୟ ଚିନ୍ତା ଆଉ ବିଶାଳ ପ୍ରସାର ସାମର୍ଥ୍ୟ ।

ସ୍ରଷ୍ଟାଙ୍କର ଲକ୍ଷ୍ୟ ସ୍ୱର୍ଗପୁର ନୁହେଁ କି ଯମାଳୟ ନୁହେଁ; ଧିମର୍ତ୍ତ୍ୟ ସ୍ୱର୍ଗ ଗଢ଼ିବା ତ ସହଜ, ପୃଥିବୀ ଗଢ଼ିବା କଠିନ । ପୃଥିବୀ ଆଣିଦିଏ ସମସ୍ୟା-ପୀଡ଼ିତ ଆତ୍ମିର ମହିମା । ଭଲ ଓ ମନ୍ଦ, ସୁଖ ଓ ଦୁଃଖର ଦ୍ୱନ୍ଦ୍ୱ ପୃଥିବୀର ଛଦ୍ମ-ମୁହଁ ମାତ୍ର । ସେଇ ଦ୍ୱନ୍ଦ୍ୱମୟ ଭୂମିରେ ସତ୍ୟ ଓ ପ୍ରେମର ପ୍ରତିଷ୍ଠା ଶାଶ୍ୱତର ଲକ୍ଷ୍ୟ । ଜୀବନରୂପୀ ସତ୍ୟର ଗୁପ୍ତ୍ୟମାତ୍ର ମରଣ, ସେଥିପାଇଁ ସ୍ରଷ୍ଟା ମଣିଷ ଭିତରେ ଅମରତ୍ୱର କାମନା ଭରିଦେଇଛନ୍ତି । ତା ଆଖିରେ ନିଜର ସୌନ୍ଦର୍ଯ୍ୟ; ସ୍ୱପ୍ନ ପ୍ରାଣରେ ଅସୀମ ଜୀବନାବେଗ ଭରି ଦେଇଛନ୍ତି । ଏକ ଅନନ୍ତ ବିନ୍ଦୁରେ ସବୁ ଖଣ୍ଡାଂଶ ମିଳିତ ହେବାର ଗତିଛନ୍ଦଟିଏ ଗଢ଼ି ନେଇଛନ୍ତି—ତାହା ପ୍ରେମ । ପୃଥିବୀର ସବୁ କ୍ଷୁଦ୍ରତା, କୁଟିଳତା, ଦ୍ୱନ୍ଦ୍ୱ, ଛଦ୍ମରୂପ ଓ ବିଭୀଷିକା ସେଇ ପ୍ରେମର ଐଶ୍ୱର୍ଯ୍ୟ ପ୍ରକାଶ ଦିଗରେ ମଣିଷର ସାଧନା-ରୂପ। ସବୁ ସୁନ୍ଦରତା, ମଧୁରତା, ସାର୍ଥକତା ସେ ସାଧନାର ସଫଳ-ରୂପ। ଅମରତ୍ୱ ମଣିଷର ଦୁରଭିଳାଷ ନୁହେଁ ମାନବାତ୍ମାର ଜନ୍ମ-ଅଧିକାର । ନ ହେଲେ ଅନ୍ତଃପୁରୁଷ ତ ଅମର, ଚିରମୁକ୍ତ, ତଥାପି ସେ କାହିଁକି ତଳକୁ ଓହ୍ଲାଇ ଆସି କାଳ ହାତରେ ନିଜକୁ ସମର୍ପି ଦେଲେ ? କାହିଁକି ମଣିଷର ଉତ୍ତୁଙ୍ଗ ଚେତନାରେ କର୍ମଭାରଟିଏ ବାନ୍ଧିନେଲେ ? ତାର ପ୍ରକୃତିର ସ୍ତରେ ସ୍ତରେ ଗୁପ୍ତ ଅନୁଜ୍ଞା ଲେଖିଦେଲେ ? ଜଡ଼ ପୃଥିବୀରେ ଅମର ଜୀବନ ପ୍ରତିଷ୍ଠାର କର୍ମ ବରଣ, ତାହା ହିଁ ଅନ୍ତରାତ୍ମାଙ୍କର ସ୍ୱାଧୀନତା । ସେଥିପାଇଁ ଜୀବନଧାରାର ସୀମା ଭିତରେ ବି ସେ ବିଶାଳ, ଜଡ଼ର ଗ୍ରନ୍ଥି ଭିତରେ ବି ସମର୍ଥ, ଜଗତ ଭିତରୁ ହିଁ କର୍ମର ମହାନ୍ ଉପାଦାନ ସବୁ ସେ ଗଢ଼ିଛନ୍ତି, ଯୁଦ୍ଧ ଏବଂ ରାତ୍ରିର ବିଭୀଷିକାରୁ ପ୍ରେମ ଏବଂ ସୌନ୍ଦର୍ଯ୍ୟର ଫୁଲ-ସକାଳକୁ ଆବାହନ କରିଛନ୍ତି । ସତ୍ୟକୁ ପ୍ରକାଶ ଓ ପ୍ରତିଷ୍ଠା କରିବା ପାଇଁ ମାନବାତ୍ମାର ଏଇ ଯେ ରକ୍ତାପ୍ଳୁତ ବଜ୍ର-ସଂଗ୍ରାମ ତାହା ହିଁ ତ ଶାଶ୍ୱତଙ୍କ ଦ୍ୱାରା ଅଙ୍ଗୀକୃତ ତାର ପ୍ରେମର ମହିମା ।

ପରମ ଯେ ମଣିଷ ଭିତରେ ଊର୍ଦ୍ଧ୍ୱତମ ଅନନ୍ତ ବ୍ୟାପ୍ତିକୁ ପ୍ରସାରିତ ହେବାର ପରମ ସତ୍ୟଟି ଉଚ୍ଚାରିତ ହେବାର, ପରମ ପ୍ରେମଟି ଉତ୍ଥାପିତ ହେବାର ଅଭିଳାଷ ଓ ଆକୂତି ଭରି ଦେଇଛନ୍ତି ତାହା ହିଁ ପୃଥିବୀର ସମସ୍ୟା ପୁଣି ସମାଧାନର ହେତୁ । ଜୀବନର ଯାତ୍ରାପଥରେ ବାରମ୍ବାର ମୃତ୍ୟୁର କଳାହାତ ମଣିଷର ଯାତ୍ରାଆୟୋଜନକୁ ପ୍ରତିରୋଧ କରିଛି, ମାତ୍ର ସ୍ଥାଣୁ କରି ଦେଇପାରି ନାହିଁ । ମୃତ୍ୟୁ ଯେଣୁ ସତ୍ୟ ନୁହେଁ, ବିଧାତା ନୁହେଁ, ମଣିଷର ଚଲା ପଥରେ

ଶାଶ୍ୱତଙ୍କ କୃଷ୍ଣଛାୟା ମାତ୍ର । ସବୁ ଦ୍ୱନ୍ଦ୍ୱର ମୂଳରୂପ ଯେ ପରମସତ୍ତାଙ୍କଠାରେ ନିହିତ, ମୃତ୍ୟୁ ସେ ସତ୍ତାଙ୍କଠାରେ ସଂଯୁପ୍ତ ଅଚେତନରୂପୀ ଘୋର ନାସ୍ତି-ବାଚକତା । ଶାଶ୍ୱତପରମଙ୍କଠାରେ ସବୁ ବିବଧତା ଓ ବୈପରୀତ୍ୟ ନିହିତ । ସେ ପରମ ଚିନ୍ମୟ ପୁଣି ଏକ ବିନ୍ଦୁରେ ଚରମ ନିଶ୍ଚେତନା, ନିର୍ବ୍ୟକ୍ତିକ, ଦୁର୍ଧର୍ଷ, ସକଳ ନିଃଶେଷିତା ଓ ସନାତନ ମହାନ୍‌ଙ୍କର ମୂକସ୍ୱାକ୍ଷର । ଶାଶ୍ୱତଙ୍କର ବିବର୍ଣ୍ଣାଭିଳାଷମାନ ଦେବତାଙ୍କ ରୂପର ଆଶ୍ରୟରେ ସଂପନ୍ନ ହୋଇଥାଏ । ଆଉ ଯେଉଁ ଅବଚେତନ ସତ୍ତା ବାସନାର ଅଙ୍କୁଶଘାତରେ ସଂଗୃହୀତ ହୁଅନ୍ତି ଏବଂ ଯେଉଁ ଗତି ଅନାଚ୍ଛାଦିତ ଭାବେ ଅନ୍ଧ, ସମସ୍ତେ ଏକ ଆଦିମୂଳଙ୍କର ପୃଥକ୍ ପ୍ରାନ୍ତ । ଏଇ ବିପରୀତ ଶକ୍ତିସବୁ ପରମଙ୍କର ଭାଗବତ ତନୁର ବାମ ଓ ଦକ୍ଷିଣ ରୂପ ।

ମୃତ୍ୟୁ ତେଣୁ ବିଧିଙ୍କ ବିରୋଧୀ ନୁହନ୍ତି, ତାଙ୍କର ଶାଶ୍ୱତ ବିଧାନର ଏକାନ୍ତ ଅନୁଗତ, ପରମଙ୍କର ଛାୟା, ତାଙ୍କ ହାତର ଆୟୁଧ । ମଣିଷର ଦୁର୍ବଳତାକୁ ଆଘାତ କରି, ସବଳ ସମର୍ଥ ଚିର ଜୀବନ ନିମନ୍ତେ ପ୍ରସ୍ତୁତ କରିବାକୁ ତାହା ତାଙ୍କର କଷାଘାତ । ସେଥିପାଇଁ ପୃଥିବୀର ସବୁ ଖର୍ବତାକୁ ସେ ଶେଷ କରିଦିଅନ୍ତି । ମାତ୍ର ସେ ନିଜେ ମଧ୍ୟ ଅଶେଷ ନୁହନ୍ତି । କୃତାନ୍ତ ସେ; ସବୁ କିଛିକୁ ଅନ୍ତ କରି ନିଜେ ଅନ୍ତ ହୁଅନ୍ତି । ଯେ ପର୍ଯ୍ୟନ୍ତ ପୃଥିବୀର ପୂର୍ଣ୍ଣ ଭଗବତ୍ ମହିମା ପ୍ରତିଷ୍ଠିତ ନ ହୋଇଛି, ମୃତ୍ୟୁର ପ୍ରୟୋଜନ ସେ ପର୍ଯ୍ୟନ୍ତ ମର୍ତ୍ତ୍ୟର ଭାଗ୍ୟରେ ଅଙ୍ଗୀକୃତ ଥିବ । ମାତ୍ର ଯେଉଁ ସତ୍ତା ସତ୍ୟରେ ସ୍ଥିତ, ପ୍ରେମରେ ଅଭିଷିକ୍ତ, ଶାଶ୍ୱତରେ ସଂଯୁକ୍ତ ସେ ମରଣାଧୀନ ହୋଇ ନ ପାରନ୍ତି । ଏବଂ ଅଜ୍ଞାନ ଓ ନିଶ୍ଚେତନାର ମହାଶକ୍ତି ମୃତ୍ୟୁଙ୍କୁ ସତ୍ୟ ଓ ପ୍ରେମର ମିଳିତ ତନୁରୂପା ସାବିତ୍ରୀ ନିଜର ଜ୍ଞାନଶକ୍ତି ବଳରେ ଅତିକ୍ରମ କରି ସାରିଛନ୍ତି । ସେ ଆଲୋକ—ଉଜ୍ଜ୍ୱଳ ବଳୟ ଅପସାରିତ କରି ସାବିତ୍ରୀଙ୍କ ପ୍ରାଣସ୍ୱରୂପ ସତ୍ୟ—ସତ୍ତା - ସତ୍ୟବାନଙ୍କୁ ମରଣରୂପୀ କଳାଛାୟା ଆଉ ଗ୍ରାସ କରିନପାରେ ।

ମୃତ୍ୟୁ ଦେବତା ଏ ଯାବତ୍ ମାନୁଷୀ ପ୍ରେମର ଅସହାୟତା ଦେଖିଥିଲେ, ବିକଳତା ଶୁଣିଥିଲେ; ମାନବିକ ପ୍ରେମର ମହିମା ପ୍ରଥମଥର ପାଇଁ ପ୍ରତ୍ୟକ୍ଷ ଭେଟିଲେ । ମଣିଷ ପୃଥିବୀର ହୋଇ ମଧ୍ୟ ପୃଥିବୀରେ ଶେଷ ନୁହେଁ; ଭାଗବତ୍ ପ୍ରତିଷ୍ଠା ପାଇଁ ସେ କ୍ଲେଶ ଉଠାଇପାରେ, ସତ୍ୟପ୍ରେମଜ୍ଞାନର ଝଲକ ରେଖା

ପୃଥିବୀର ଲଲାଟପଟରେ ଲେଖି ଦେଇପାରେ, ଏଇ ମୁହୂର୍ତ୍ତକୁ ତ ତାଙ୍କର ଅପେକ୍ଷା ଥିଲା । ଏଇ ମୁହୂର୍ତ୍ତର ଆବିର୍ଭାବ ପାଇଁ ତ ତାଙ୍କର ଏତେ କଠୋର ନିୟମବଦ୍ଧ ନିଦାରୁଣ ଜୀବନ; ଏଇ ମୁହୂର୍ତ୍ତ ସୃଷ୍ଟି ଉଦ୍ଦେଶ୍ୟରେ ତ ବିଧାତା ତାଙ୍କୁ ଏତେ ଶକ୍ତିମୟୀ କରି ଗଢ଼ିଛନ୍ତି । ସସଂଭ୍ରମେ କୃତାନ୍ତ ଜ୍ୟୋତିଃବର୍ଣ୍ଣା ସାବିତ୍ରୀଙ୍କ ପାଖେ ନିମୀଳିତ ଚକ୍ଷୁ ହୋଇଗଲେ । ସତ୍ୟବାନଙ୍କ ଉପରୁ ତାଙ୍କର ଘନକଳା କବଳଚ୍ଛାୟା ସ୍ୱତଃ ଅପସାରିତ ହୋଇଗଲା । ମହାକାଳର ଘୋର ଅନ୍ଧାରରେ ମହାଜୀବନର ଜ୍ୟୋତିଃ ରେଖାଟିଏ ଶାଶ୍ୱତଙ୍କ ଦୀପ୍ତ-ଉଜ୍ଜ୍ୱଳ ଦୃଷ୍ଟିପାତ ହୋଇ ଝଲସିଗଲା ।



